# ହରିଦାସୀ



## ଗୋଟିଏ ପାରିବାରିକ ଚିତ୍ର

——:o:——

ଶ୍ରୀ ଜୀବନ କୃଷ୍ଣ ମୁଖୋପାଧ୍ୟାୟ ପ୍ରଣୀତ

ଓ

ଶ୍ରୀ ଗଙ୍ଗାଧର ରଥ ଅନୁବାଦିତ



PRINTED FOR THE ORISSA CHRISTIAN LITERATURE COMMITTEE
AT THE ORISSA MISSION PRESS, CUTTACK.

1921

1

# ହରିଦାସୀ



ଶ୍ରୀ ଜୀବନକୃଷ୍ଣ ମୁଖୋପାଧ୍ୟାୟ ପ୍ରଣୀତ,

ଓ

ଶ୍ରୀ ଗଙ୍ଗାଧର ରଥ ଅନୁବାଦତ

ଚତୁର୍ଥ ସଂସ୍କରଣ



PRINTED FOR THE ORISSA CHRISTIAN LITERATURE COMMITTEE,
AT THE ORISSA MISSION PRESS, CUTTACK

1921

ମୂଲ୍ୟ ଦୁଇ ଅଣା

# ହର ଦାସୀ

—:0:—

## ପ୍ରଥମ ଅଧ୍ୟାୟ

ହରଦାସୀ ପିତାର ଏକମାତ୍ର କନ୍ୟା ; ତାହାର ପିତା ଗମେଣ୍ଟର ବାବୁ କଲିକତାର କୌଣସି ସୌଦାଗର ଅଫିସରେ ମାସିକ ୨୦୦ ଟଙ୍କା ବେତନରେ କାର୍ଯ୍ୟଦାକ୍ଷ କାମ କରୁଥିଲେ ।

ହରଦାସୀର ମା ନାହିଁ; ଅନୁଡ଼ିଶାଳରେ ତାହାର ମାତାଙ୍କର ମୃତ୍ୟୁ ଘଟିଥିଲା । ଜଣେ ବୃଦ୍ଧା ଦାସୀ ହରଦାସୀକୁ ଲାଳନ ପାଳନ କରଥିଲେ । ହରଦାସୀ ତାହାଙ୍କୁ 'ମା ମା' ବୋଲି ଡାକୁଥିଲା ।

ଅଧିକ ବୟସରେ ସ୍ତ୍ରୀର ମୃତ୍ୟୁ ଘଟିବାରୁ ଆଉ ଥରେ ବିବାହ କରିବା ଦୁଃଖଜନକ ବିବେଚନା କରି ଗମେଣ୍ଟର ବାବୁ ଆଉ ବିବାହ କଲେ ନାହିଁ । ଜଣେ ଦରିଦ୍ର କୁଳୀନ ସନ୍ତାନ ଦେଖି ଅତି ପିଲା ଅବସ୍ଥାରୁ ସେ ହରଦାସୀକୁ ସେହି ବାଳକ ସଙ୍ଗରେ ବିବାହ କରି ଦେଇଥିଲେ । ବିବାହ ସମୟରେ ହରଦାସୀର ଜ୍ଞାନ ଜନ୍ମି ନ ଥିଲା । ଗମେଣ୍ଟର ବାବୁ ଉକ୍ତ ବାଳକ ହରେନ୍ଦ୍ର କୁମାରଙ୍କୁ କନ୍ୟା ପ୍ରଦାନ କରି ନିଜ ବସାରେ ରଖି-ଥିଲେ । ସ୍ୱାମୀ କ'ଣ, ତାହାଙ୍କ ସହିତ ସ୍ତ୍ରୀର ସମ୍ବନ୍ଧ କ'ଣ, ଏସବୁ ବିଷୟ ହର-ଦାସୀ ଜାଣି ନ ଥିଲା କି ବୁଝି ନ ଥିଲା । ହରେନ୍ଦ୍ର ମଧ୍ୟ ସରଳମତି, କୋମଳପ୍ରକୃତି ବାଳକ । ସେମାନେ ପରସ୍ପର ନାମ ଧରି ଡାକନ୍ତି, ଦୁଇ ଜଣ ଏକ ସଙ୍ଗରେ ଖେଳନ୍ତି । ହରେନ୍ଦ୍ର ସ୍କୁଲକୁ ଗଲେ ହରଦାସୀ ତାହାଙ୍କର ଆସିବା ଅପେକ୍ଷାରେ ବାଟ ଚାହିଁଥାଏ । ସ୍କୁଲ ଛୁଟି ପରେ

ସେ ବସାକୁ ଆସିଲେ ଦୁଇ ଜଣଯାକ ପିଣ୍ଡାରେ ବସି କାହାଣୀ କହନ୍ତି, ତାଗ ପକାନ୍ତି, ଯିବା ଆସିବାର ଲୋକ ଦେଖନ୍ତି, ଗାଡ଼ି ଗଣନ୍ତି ।

ସନ୍ଧ୍ୟାବେଳରେ ଘନଶ୍ୟାମ ବାବୁ ଘରକୁ ଆସିଲେ ଏମାନେ ଦୁଇ ଜଣ ତାହାଙ୍କ ପାଖରେ ପଢ଼ାଶୁଣା କରନ୍ତି । ପରେ ଦୁଇଜଣ ଖାଇ ପିଇ ଦାସୀ ପାଖରେ ଶୋଇ ଯାନ୍ତି ।

ଯେପରି ଗୋଟିଏ ମାଧବୀ ଲତା ନିକଟସ୍ଥ ଗୋଟିଏ କୋମଳ ତରୁକୁ ଅପୂର୍ବ ପ୍ରେମରେ ଆଲିଙ୍ଗନ କରି ଜଡ଼ିତ ହୋଇ ଉପରକୁ ଉଠୁଥାଏ ସେହିପରି ହରେନ୍ଦ୍ର ଓ ହରିଦାସୀଙ୍କର ବାଲ୍ୟ ଜୀବନ କଟିବାକୁ ଲାଗିଲା ।

* * * * *

ହରେନ୍ଦ୍ର ବାବୁଙ୍କର ପଢ଼ିବା ସମୟ ଗତ ହୋଇଅଛି; ଘନଶ୍ୟାମ ବାବୁ ଜୁଆଁଇଙ୍କ ବିଦ୍ୟା ଶିକ୍ଷା ନିମନ୍ତେ ଯେ ଅର୍ଥ ବ୍ୟୟ କରିଥିଲେ ତାହା ସାର୍ଥକ ହୋଇଅଛି ।

ହରେନ୍ଦ୍ର ବାବୁ ଏଣ୍ଟ୍ରେନ୍ସଠାରୁ ଏମ୍.ଏ., ବି.ଏଲ୍., ପର୍ଯ୍ୟନ୍ତ ସମସ୍ତ ପରୀକ୍ଷାରେ ପ୍ରଶଂସାର ସହିତ ଉତ୍ତୀର୍ଣ୍ଣ ହୋଇ ଏକ ବର୍ଷରୁ ଅଧିକ ହେଲା ଜିଲ୍ଲା କୋର୍ଟରେ ଓକାଲତି କରୁଅଛନ୍ତି । ଏହି ଅଳ୍ପ ସମୟ ମଧ୍ୟରେ ତାହାଙ୍କର ନାମ ବେଶ୍ ବିଖ୍ୟାତ ହୋଇଅଛି ।

ମାସିକ ୧୦୦ ଟଙ୍କାରୁ ଅଧିକ ଆୟ ହୁଏ । ଲୋକମାନଙ୍କର ଆଖି ତାହାଙ୍କ ଉପରେ ପଡ଼ିଅଛି । ଫୌଜଦାରୀ ମକଦ୍ଦମାରେ ସେ କାହାର ଓକିଲ ହେଲେ ଆଉ ବଡ଼ ଓକିଲର ଆବଶ୍ୟକ ହୁଏ ନାହିଁ । ମହରମ ଛୁଟିରେ ହରେନ୍ଦ୍ର ବାବୁ ହରିଦାସୀକି ନେବା ଯିବାପାଇଁ କଲିକତାକୁ ଆସିଅଛନ୍ତି ।

ଘନଶ୍ୟାମ ବାବୁଙ୍କର ପରିବାର ନାହିଁ; ହରିଦାସୀ ଛଡ଼ା ଆଉ ତାହାଙ୍କର ପିଲାପିଲି ନାହାନ୍ତି । ବହୁକାଳରୁ ସୌଦାଗରୀ ଅଫିସରେ ଚାକିରୀ କରିବାରୁ ବେଶ୍ ଦଶ ଟଙ୍କା ସଞ୍ଚୟ କରିଅଛନ୍ତି । ହରେନ୍ଦ୍

ବାବୁଙ୍କର ପଢ଼ା ଶେଷ ହେଲେ ଗ୍ରମେଶ୍ୱର ବାବୁ ବନ୍ଦୋବସ୍ତ କରିଥିଲେ ଯେ, ସେ ଘରଜ୍ୱାଇଁ ହୋଇ ରହି କଲିକତାରେ କୌଣସି ଅଫିସରେ ଚାକିରି କରିବେ । କିନ୍ତୁ ହରେନ୍ଦ୍ର ବାବୁଙ୍କ ଚରିତ୍ର ଧୀର, ଶିଷ୍ଟ ଓ ଶାନ୍ତ ହେଲେହେଁ ତାହାଙ୍କର ଚରିତ୍ରରେ ଗୋଟିଏ ଅତି ମହତ୍ ଦୋଷ ଥିଲା । ସେ କୌଣସି କାମ କରିବାକୁ ଇଚ୍ଛା କଲେ ତାହା କାର୍ଯ୍ୟରେ ପରିଣତ ନ କରି ଛାଡ଼ନ୍ତି ନାହିଁ । ତାହାଙ୍କର ଇଚ୍ଛା ବିରୁଦ୍ଧରେ କେହି କୌଣସି କଥା କହିଲେ ସେ କେବେ ତାହା ସହି ପାରନ୍ତି ନାହିଁ । ହରେନ୍ଦ୍ର ବାବୁ ଶ୍ୱଶୁରଙ୍କୁ ପିତା ତୁଲ୍ୟ ଭକ୍ତି ଶ୍ରଦ୍ଧା କରିଥାନ୍ତି । ମନର ସହିତ ତାହାଙ୍କୁ ଭଲ ପାନ୍ତି । କିନ୍ତୁ ଚାକିରି କରିବାକୁ ତାଙ୍କର ଇଚ୍ଛା ନ ଥିଲା । ବିଶେଷତଃ ଶ୍ୱଶୁର ଘରେ ଚିରକାଳ ଅନ୍ନଭୋଗ କରି ରହିବାକୁ ତାହାଙ୍କର ଇଚ୍ଛା ହେଲା ନାହିଁ । ସେ କାହାକୁ କିଛି କଥା ନ କହି କଲିକତା ଛାଡ଼ି ସ୍ୱଦେଶକୁ ଆସି ଜିଲ୍ଲା କୋର୍ଟରେ ଓକାଲତି କରିବାକୁ ଆରମ୍ଭ କଲେ ।

ହରେନ୍ଦ୍ର ବାବୁଙ୍କର ସମ୍ବଳ ମଧ୍ୟରେ ତାହାଙ୍କର ବିଦ୍ୟା ଓ ମନୋହର ରୂପ । ଯେ ତାହାଙ୍କୁ ଦେଖେ ବା ତାହାଙ୍କ ସଙ୍ଗରେ ଆଳାପ କରେ, ସେ ତାହାଙ୍କୁ ଭଲ ନ ପାଇ ରହିପାରେ ନାହିଁ । ହରେନ୍ଦ୍ର ବାବୁ ଓକାଲତି ଆରମ୍ଭ କରି ଶ୍ୱଶୁରଙ୍କୁ ପତ୍ର ଲେଖି କ୍ଷମା ପ୍ରାର୍ଥନା କଲେ । ଗ୍ରମେଶ୍ୱର ବାବୁ ଦୁଃଖିତ ହେଲେ, କିନ୍ତୁ ବିରକ୍ତ ହେଲେ ନାହିଁ । ହରେନ୍ଦ୍ର ବାବୁଙ୍କର ନାମ ବିଖ୍ୟାତ ନ ହେବା ପର୍ଯ୍ୟନ୍ତ ସେ ତାହାଙ୍କୁ ବସା ଖରଚ ସାହାଯ୍ୟ କରିଥିଲେ । ଆମ୍ଭେମାନେ ଶୁଣିଅଛୁଁ ଯେ ୬ ମାସ ଉତ୍ତାରେ ସେ ଆଉ ଶ୍ୱଶୁରଙ୍କର ସାହାଯ୍ୟ ଗ୍ରହିଲେ ନାହିଁ । "ହରଦାସୀ ଛାଡ଼ିଯିବ," ଏହି କଥା ମନରେ କରି ଗ୍ରମେଶ୍ୱର ବାବୁଙ୍କର ମନ ଆକୁଳ ହେଲା, ଚକ୍ଷୁରୁ ଜଳ ପଡ଼ିଲା । ସେ ଭାବିଲେ ହରଦାସୀ ତାହାଙ୍କୁ ଛାଡ଼ି କାହିଁକି ଯିବ ? ସେ ଯେ ଧନ ସଞ୍ଚୟ କରିଅଛନ୍ତି ସେଥିରେ ତାହାର ଦିନ ଅତି ସୁଖ ସ୍ୱଚ୍ଛନ୍ଦରେ ଅତିବାହିତ ହେବ । କିନ୍ତୁ ସେ ଅର୍ଥରେ କି ତାହାର ଅଭାବ

ପୂର୍ତ୍ତି ହେବ ? ସ୍ୱାମୀ ତ୍ୟାଗ କରି ସେ କି ବୃଦ୍ଧ ପିତା ନିକଟରେ ରହିବାକୁ ଇଚ୍ଛା କରିବ ? ହରଦାସୀ ପିତା ପାଖରେ ରହିବାକୁ ଇଚ୍ଛା କଲେ ମଧ୍ୟ ପିତା ହୋଇ ସେ ଇଚ୍ଛା ସମର୍ଥନ କରିବା ତାହାଙ୍କର କି ଉଚିତ ? ରମେଶର ବାବୁ ଭାବି ବୁଝିଲେ ଯେ ସେ ସ୍ୱାର୍ଥପର ହୋଇ ପ୍ରାଣାଧିକା କନ୍ୟାର ସୁଖରେ ବାଧା ଦେବା ସକାଶେ ପ୍ରବୃତ୍ତ ହେଉଅଛନ୍ତି । ହରଦାସୀକୁ ବିଦାୟ ଦେବା ନିମନ୍ତେ ପ୍ରସ୍ତୁତ ହୋଇ ସେ ମନେ ମନେ କହିଲେ, "ଯାଅ ମା, ଦେବତା ସାକ୍ଷୀ କରି ତୁମ୍ଭକୁ ଯାହାଙ୍କ ହସ୍ତରେ ସମର୍ପଣ କରିଅଛି ତାହାଙ୍କର ସଙ୍ଗରେ ଯାଅ ।" ଚକ୍ଷୁର ଜଳରେ ବୃଦ୍ଧର ବକ୍ଷ ଭାସିବାକୁ ଲାଗିଲା । ଯେ କାଳରେ ପିତା କାନ୍ଦି କାନ୍ଦି ଚକ୍ଷୁର ଜଳରେ ବକ୍ଷ ଭସାଉଅଛନ୍ତି, ସେ ସମୟରେ ହରଦାସୀ ଅଉ ଗୋଟିଏ ବଖରାରେ ବସି କାନ୍ଦୁଥିଲେ । ତାହାର ଉଭୟ ସଙ୍କଟ ଉପସ୍ଥିତ ; ଏକଆଡେ ପିତା, ଅନ୍ୟ ଆଡେ ସ୍ୱାମୀ ; ଯେ ପିତା ପିଲାଦିନରୁ ସ୍ନେହ ଯତ୍ନରେ ପାଳନ କରି ଆସିଅଛନ୍ତି, ଆଜ ସେ ତାହାଙ୍କୁ ତ୍ୟାଗ କରି ଚାଲି ଯାଉଅଛି । ତାହାର ମାଆ ନାହିଁ । ମାତାଙ୍କର ସ୍ୱର୍ଗାରୋହଣ ଦିନଠାରୁ ସେ ତାର ପିତାଙ୍କର ଏକମାତ୍ର ଜୀବନର ଅବଲମ୍ବନ ; ଭୋଜନ ସମୟରେ ହରଦାସୀ ନିକଟରେ ଉପସ୍ଥିତ ନ ଥିଲେ ପିତା ଭୋଜନରେ ତୃପ୍ତ ହୁଅନ୍ତି ନାହିଁ । ଶୟନକାଳରେ ହରଦାସୀ ପଦ ମର୍ଦ୍ଦନ ନ କଲେ ତାହାଙ୍କର ନିଦ୍ରା ହୁଏ ନାହିଁ । "କାଲି ବାପାଙ୍କ ପାଖରେ ବସି କିଏ ତାହାଙ୍କୁ ଖୁଆଇବ ? ପୀଡିତ ହେଲେ କିଏ ତାହାଙ୍କୁ ସେବା କରିବ ?" ଏହି କଥା ଭାବି ଭାବି ହରଦାସୀର ପ୍ରାଣ ଆକୁଳ ହେଲା । ହୃଦୟରୁ ଶୋକ ତରଙ୍ଗ ଉଚ୍ଛୁଳି ଉଠିଲା । ବିବାହ ଦିନଠାରୁ ଏକବର୍ଷ ପୂର୍ବ ପର୍ଯ୍ୟନ୍ତ ହରେନ୍ଦ୍ର ବାବୁ ଶ୍ୱଶୁରାଳୟରେ ବାସ କରୁଥିଲେ, ସେଥିପାଇଁ ହରଦାସୀର ଜୀବନ ଅତି ଆନନ୍ଦରେ ଅତିବାହିତ ହୋଇଅଛି । ପରେ ହରେନ୍ଦ୍ର ବାବୁ ଓକାଲତି କରିବା ସକାଶେ ଅନ୍ୟ ସ୍ଥାନକୁ ଗଲେ । ଯଦି କୌଣସି ସମୟରେ

ସ୍ୱାମୀଙ୍କର ପଶ୍ଚ ଆସିବାର ବିଳମ୍ବ ହେବ, ତାହାହେଲେ ତାହାଙ୍କର ଅମଙ୍ଗଳ ଭାବି ହରଦାସୀର ପ୍ରାଣ ଆକୁଳ ହେବ । ଏବେ ବୃଦ୍ଧ ପିତାଙ୍କୁ ଛାଡ଼ି ଯିବାପାଇଁ ତାହାର ପ୍ରାଣ କାନ୍ଦୁଅଛି । ହରଦାସୀ ମନେକଲା ତାହାର କପାଳରେ ଷୋଳଅଣା ସୁଖ ଆଉ କେବେ ଘଟିବ ନାହିଁ । ଏମନ୍ତ ଭାବୁଁ ଭାବୁଁ ସେ ଶୋଇ ପଡ଼ିଲା । ପ୍ରାତଃକାଳରେ ଉଠି ପିତାଙ୍କ ନିକଟରୁ ମେଲାଣି ନେଇ ସ୍ୱାମୀଙ୍କ ସଙ୍ଗରେ ଗମନ କଲା ।

---

## ଦ୍ୱିତୀୟ ଅଧ୍ୟାୟ

ପୂର୍ବ ଅଧ୍ୟାୟରେ ଲିଖିତ ଘଟଣାର ପାଞ୍ଚବର୍ଷ ପରେ ହରଦାସୀ ଦୁଇଟି ପୁତ୍ର ସନ୍ତାନ ଲାଭ କରିଅଛନ୍ତି । ପିଲାମାନଙ୍କର ଅନ୍ନପ୍ରାଶନ ସମୟରେ ରମେଶର ବାବୁ ଜୁଆଇଁଙ୍କର ଘରକୁ ଆସିଥିଲେ । ହରଦାସୀ ମଧ୍ୟ ଦୁଇ ତିନଥର ପିତାଙ୍କ ଘରକୁ ଯାଇଥିଲେ । ଏହିକ୍ଷଣି ଆଉ ତାହାଙ୍କୁ ସେଠାରେ ରହିବାକୁ ହେବ ନାହିଁ । କାରଣ ସ୍ୱାମୀ ଘରେ ସେ ଏକମାତ୍ର ଘରଣୀ, ସେ ସର୍ବେସର୍ବା । ହରେନ୍ଦ୍ର ବାବୁ ଟଙ୍କା ଅରଜନ୍ତି, ଆଉ ହର-ଦାସୀ ଟଙ୍କା ଖରଚ କରନ୍ତି । ଘରର ସମସ୍ତ ଭାର ତାଙ୍କ ଉପରେ । ସେ ଦିନେ ଘରେ ନ ରହିଲେ ଘର ଚଳେ ନାହିଁ । ହରେନ୍ଦ୍ର ବାବୁଙ୍କ ବିଦ୍ୟା ବୁଦ୍ଧି ହଜିଯାଏ, ଓକାଲତି କାମରେ ଭ୍ରମ ହୁଏ । ହରେନ୍ଦ୍ର ବାବୁଙ୍କର ଖ୍ୟାତି ଦିନକୁଦିନ ବଢ଼ୁଅଛି । ଓକିଲମାନଙ୍କ ମଧ୍ୟରେ ସେ ଜଣେ ଧାର୍ମିକ ଚରିତ୍ରବାନ୍ ଲୋକ ବୋଲି ଗୃହଅଦ୍ରରେ ତାହାଙ୍କର ନାମ ଯଶଃ ଘୋଷିତ ହେଉଅଛି । ଓକାଲତି ଛଡ଼ା ତାହାଙ୍କ ହାତରେ ସର-କାରୀ କାମ ଅନେକ ଅଛି । ସେ ମିଉନିସିପାଲିଟିର ଚେୟାରମେନ୍, ଡିଷ୍ଟ୍ରିକ୍ଟବୋର୍ଡର ଭାଇସ୍-ଚେୟାରମେନ, ଅନରେରୀ ମାଜିଷ୍ଟ୍ରେଟ, ହିତ-କାରୀ ସଭାର ସମ୍ପାଦକ, କୌଣସି ଉତ୍ତମ କାର୍ଯ୍ୟ କରିବାକୁ ହେଲେ ସେ

ପ୍ରଧାନ ଉଦ୍ୟୋଗୀ, ସଭା ସମିତିରେ ପ୍ରଧାନ ବକ୍ତା, ସବୁ କାମରେ ହରେନ୍ଦ୍ର ବାବୁ । ସେ ନ ଥିଲେ କୌଣସି କାର୍ଯ୍ୟ ଯେମନ୍ତ ସୁଚାରୁରୂପେ ପରିଚାଳିତ ହୁଏ ନାହିଁ ।

ସମୟ ଅତି ଆନନ୍ଦରେ କଟି ଯାଉଅଛି, ଏମନ୍ତ ସମୟରେ ତାହାର ଅଦୃଷ୍ଟ-ଆକାଶରେ କାଳମେଘ ଦେଖାଦେଲା; ହରେନ୍ଦ୍ର ବାବୁ ପୀଡିତ ହେଲେ, ଆହୂତ ଓ ଅନାହୂତ ହୋଇ କେତେ କେତେ ଡାକ୍ତର ଓ କବିରାଜ-ମାନେ ଆସି ତାହାଙ୍କର ନାଡ଼ୀ ଦେଖିଲେ, ରୋଗ ପରୀକ୍ଷା କଲେ, ଔଷଧ ଦେଲେ; କିନ୍ତୁ ପୀଡାର ଉପଶମ ନ ହୋଇ ଦିନକୁଦିନ ବଢ଼ିବାକୁ ଲାଗିଲା । ଜିଲ୍ଲାର ସମସ୍ତ ଲୋକ ତାହାଙ୍କ ପାଇଁ ଉତ୍କଣ୍ଠିତ । ଦୁଇମାସ ଉତ୍ତାରେ ତାହାଙ୍କର ରୋଗ ଆରୋଗ୍ୟ ହେବାକୁ ଲାଗିଲା; ଆଉ କିଛି ଭୟ ବା ଆପଦର ଆଶଙ୍କା ନାହିଁ । କିନ୍ତୁ ସମ୍ପୂର୍ଣ୍ଣ ରୋଗରୁ ମୁକ୍ତ ହେବା-ପାଇଁ ଆହୁରି ଏକମାସ ଲାଗିଲା । ଆଜି ତିନମାସ ଉତ୍ତାରେ ହରେନ୍ଦ୍ର ବାବୁ ଘର ଭିତରୁ ବାହାରି ପିଣ୍ଡାକୁ ଆସିଅଛନ୍ତି । ଆଜି ବନ୍ଧୁବାନ୍ଧବଙ୍କର ବଡ ଆନନ୍ଦ, ଆହ୍ଲାଦ । ପ୍ରତିବାସୀମାନଙ୍କର ବଡ ସୁଖ । ସମସ୍ତେ ମହା ଆନନ୍ଦରେ ବାବୁଙ୍କୁ ଦର୍ଶନ କରିବା ନିମନ୍ତେ ଆସିଲେ । ହରିଦାସୀ ପୁରୋହିତ ଡକାଇ ସତ୍ୟନାରାୟଣଙ୍କର ପୂଜା କଲେ, ବ୍ରାହ୍ମଣ ଭୋଜନ କରାଇ ଦକ୍ଷିଣା ପ୍ରଦାନ କଲେ । ସେହି ସଙ୍ଗେ ସଙ୍ଗେ ଦୁଃଖୀ, ଦରିଦ୍ର, କାଙ୍ଗାଳ-ମାନଙ୍କୁ ଖୁଆଇଲେ ।

ହରେନ୍ଦ୍ର ବାବୁଙ୍କର ଆଉ ପୀଡ଼ା ନାହିଁ । କିନ୍ତୁ ଶରୀର ଅତି ଦୁର୍ବଳ, ଭୋକ ହୁଏ ନାହିଁ । ସେଥିପାଇଁ ଡାକ୍ତର ବାବୁମାନେ ଅଳ୍ପ ମଦ ପାନ କରିବାକୁ ପରାମର୍ଶ ଦେଲେ । ମଦ ପ୍ରତି ବାବୁଙ୍କର ଦୃଢ ବିଦ୍ୱେଷ ଥିଲା; କିନ୍ତୁ ଶରୀର-ରକ୍ଷା ନିମନ୍ତେ "ଔଷଧାର୍ଥେ ସୁରାପାନ କଲେ ଦୋଷ ନାହିଁ" ବିବେଚନା କରି ସେହି ପରାମର୍ଶ ଅନୁସାରେ ମଦ ପାନ କରିବାକୁ ଆରମ୍ଭ କଲେ । କ୍ରମେ କ୍ରମେ ଶରୀର ସବଳ ହେଲା । ଏକ, ଦୁଇ, ତିନ କରି

ପ୍ରାୟ ଛ ମାସ ଗତ ହେଲା ; କିନ୍ତୁ ସୁରାପାନ ଅବଶ୍ରାନ୍ତ ଚାଲିବାକୁ ଲାଗିଲା । ମଦପ୍ରତି ତାହାଙ୍କର ଯେଉଁ ବିଦ୍ୱେଷ ଭାବ ଥିଲା ତାହା ଅଜ୍ଞାତସାରରେ କ୍ରମେ ୨ ଦୂର ହୋଇଗଲା ; ଏବେ ଆଉ ଦୁଇବେଳା ପାନ ନ କରି ରାତ୍ରିରେ ଆହାର ପୂର୍ବେ ଥରେମାତ୍ର ପାନ କରନ୍ତି । ପୂର୍ବରେ ଦୁଇଥରରେ ଯେତିକି ପରିମାଣରେ ପାନ କରୁଥିଲେ ବର୍ତ୍ତମାନ ତାହାଠାରୁ ଅଧିକ ପାନ କରନ୍ତି । ପୂର୍ବରେ କୌଣସି ୨ ଦିନରେ ଗ୍ଲାସରେ ଟିକିଏ ମଦ ବେଶି ପଡିଗଲେ ତାହା ବୋତଲରେ ପୁନଶ୍ଚ ଢାଳି ରଖୁଥିଲେ ; ଏବେ କୌଣସି ୨ ଦିନ ମାତ୍ରା ବେଶି ହେଲେ ତାହା ଆଉ ବୋତଲରେ ଢଳା ନ ହୋଇ ଉଦରସ୍ଥ ହୁଏ । ମାତ୍ରା ମଧ୍ୟ ଦିନକୁଦିନ ବଢି ଯାଉଅଛି । ପୂର୍ବରେ ୨୪ ଦିନକୁ ଏକ ବୋତଲ ଲାଗୁଥିଲା, ମାତ୍ର ଏବେ ତିନି ବୋତଲ ହେଲେ ମଧ୍ୟ ଏକା ମାସକୁ ଅଣ୍ଟୁ ନାହିଁ ।

ଏତେ ଦିନ ଅଭାଗିନୀ ହରଦାସୀ ବୁଝି ପାରି ନାହିଁ ଯେ, ତାହାର କି ସର୍ବନାଶ ହେଉଅଛି । ତାହାର ଅଦୃଷ୍ଟ-ଆକାଶରେ ଯେ କଳାମେଘ ଦେଖା ଦେଇଥିଲା ସେହି କଳାମେଘ କ୍ରମେ ୨ ଘନୀଭୂତ ହୋଇ ଯାଉ-ଅଛି । ହରେନ୍ଦ୍ର ବାବୁଙ୍କର ମଦ ପ୍ରତି ଅଶକ୍ତି ଜନ୍ମିଅଛି, ମଦ ପାନ ନ କଲେ ଆଉ ସେ ରହି ପାରନ୍ତି ନାହିଁ, ଅଳ୍ପ ପିଇଲେହେଁ ତୃପ୍ତ ହୁଅନ୍ତି ନାହିଁ । ଦାଣ୍ଡଘର ବୈଠକଖାନାରେ ରାତ୍ରିର କାର୍ଯ୍ୟ କର୍ମ ଶେଷ ହେଲେ ସମସ୍ତ ମହୋକିଲମାନେ ଉଠିଗଲା ଉତ୍ତାରେ ବାବୁ ଏକା ବସି ସୁରାପାନ କରି ଘର ଭିତରକୁ ଯାଇ ଭୋଜନ ସାରି ଶୟନ କରନ୍ତି ।

ଦିନେ ରାତି ଅନେକ ହୋଇଅଛି, ଏତେବେଳଯାଏ ହରେନ୍ଦ୍ର ବାବୁ ଭିତରକୁ ଆସି ନାହାନ୍ତି, ହରଦାସୀ ତାହାଙ୍କର ଭୋଜନ ସାମଗ୍ରୀ ସମ୍ମୁଖରେ ରଖି ଦୀପ ଅଲ୍ପ ଅରେ ବସି ୨ ବହି ପଢୁଅଛନ୍ତି ; ଏମନ୍ତ ସମୟରେ ଦାଣ୍ଡଘରରୁ ଚାକରର କ୍ରନ୍ଦନସ୍ୱର ଶୁଣିବାକୁ ପାଇଲେ । ତରତର ହୋଇ ଖିଡକି ପିଠାଇ ଶୁଣିଲେ ଯେ, ବାବୁ ଅପଛୁ କଥାରେ

ସେହି ଚାକରକୁ ଗାଳି ଦେଇ ପ୍ରହାର କରୁଅଛନ୍ତି । ଚାକରମାନଙ୍କୁ ପ୍ରହାର କରିବା ଦୂରେ ଥାଉ, ହରେନ୍ଦ୍ରବାବୁ କେବେ କାହାକୁ ଗୋଟିଏ ମନ୍ଦ କଥା କୁହନ୍ତି ନାହିଁ ; ଆଜ କାହିଁକି ଏମନ୍ତ ଘଟିଲା ? ହରଦାସୀ କିଛି ବୁଝି ପାରିଲେ ନାହିଁ। ତାହାଙ୍କର ମନ ଅସ୍ଥିର, ବଡ଼ ଅସ୍ଥିର, ସ୍ୱାମୀଙ୍କର ଏମନ୍ତ ଭାବ ଦେଖି ସେ ବଡ଼ ଚଞ୍ଚଳ ହେଲେ। ଅଳ୍ପକ୍ଷଣ ଉତ୍ତାରେ ହରେନ୍ଦ୍ର ବାବୁ ଭିତରକୁ ଆସିବାରୁ ଦେଖାଗଲା ଯେ, ତାହାଙ୍କର ଚକ୍ଷୁ ରକ୍ତବର୍ଣ୍ଣ ହୋଇଅଛି, ପାଦ ଟଳଟଳ, ଶରୀର ଦୁର୍ବଳ, ମୁହଁରୁ ଭଣ ଭଣ ଦୁର୍ଗନ୍ଧ ବାହାରୁଅଛି ।

ସେହି ଦିନରେ ଗୋଟିଏ ଜବର ମକଦ୍ଦମା ହାରିଯିବାରୁ ତାହାଙ୍କର ମନ ବଡ଼ ଚଞ୍ଚଳ ହୋଇଥିଲା । ସେହି ସନ୍ଧ୍ୟା ବେଳରେ ମକ୍କେଲ୍-ମାନଙ୍କର କିଛି କାମ କରି ପାରିଲେ ନାହିଁ । ସମସ୍ତେ ଉଠିଗଲା ଉତ୍ତାରେ ସେ ଚାକରକୁ ମଦ ବୋତଲ ଆଣିବାକୁ କହିଲେ, ଅନ୍ୟ ଦିନଠାରୁ ଆଜ ଅଧିକ ପରିମାଣରେ ମଦ ପାନ କରିବାରୁ ତାହାଙ୍କର ବଡ ନିଶା ହେଲା । ଅକାରଣରେ ମଦ ଝୁଙ୍କରୁ ଚାକରକୁ ଗାଳି ଦେଲେ ଓ ମାରିଲେ । ତାହାର ଅପରାଧ ଏହି ଯେ ଗୁଡ଼ାଖୁ ଦେଉଁ୨ ଟିକିଏ ବିଲମ୍ବ ହେଲା । ହରଦାସୀ ଏ ସକଳ ଘଟଣା କିଛି ଜାଣି ନ ଥିଲେ । ସେଥିପାଇଁ ସେ ଚାକରକୁ ପଚାରିଲେ, ବାବୁ ସେହି କଥା ଶୁଣି କ୍ରୋଧରେ ଜ୍ୱଳି ଉଠିଲେ, ପ୍ରିୟତମା, ପ୍ରାଣାଧିକା ଭାର୍ଯ୍ୟାକୁ ନାନାପ୍ରକାର ଅଶୁଚ କଥା କହି ଅପ-ମାନ କଲେ । ଗିରେନ୍ଦ୍ର ବାବୁ ତାହାଙ୍କୁ ଘର ଜୁଆଇଁ କରି ରଖିବାକୁ ଇଚ୍ଛା କରିଥିଲେ ; ଏତେ ଦିନ ଉତ୍ତାରେ ସେହି କଥା ଧେନି ସ୍ତ୍ରୀକୁ ଖୋଣ୍ଟା ଦେଇ ଶ୍ୱଶୁରଙ୍କୁ ମଧ୍ୟ ଗାଳି ଦେଲେ ; ଅବଶେଷରେ ଭୋଜନ ସାମଗ୍ରୀ ସମସ୍ତ ଘରର ଚାରିଆଡ଼େ ବିଞ୍ଚି ଦେଇ ପଲଙ୍କରେ ଯାଇ ଶୟନ କଲେ । ଆଜ ସର୍ବପ୍ରଥମେ ତାହାଙ୍କ ଜୀବନରେ ସ୍ୱାମୀଙ୍କ ମୁଖରୁ ଅପମାନଜନକ କଥା ହରଦାସୀ ଶୁଣିବାକୁ ପାଇଲେ । ନିଜର ଓ ପିତାଙ୍କର ଅପମାନ ସହ୍ୟ

ହେଲା ନାହିଁ, ସମସ୍ତ ରାତି କାନ୍ଦି୨ ଆଖି ଫୁଲିଗଲା, ଜାଣିଲେ ମଦ ତାହାଙ୍କର ସ୍ବାମୀର ସର୍ବନାଶ କରୁଅଛି । କିପ୍ରକାରେ ତାହାଙ୍କୁ ମଦ ଅଭ୍ୟାସରୁ ବିରତ କରିବେ, ଏହି ସମସ୍ତ ଚିନ୍ତା କରୁ୨ ତାହାଙ୍କର ନିଦ୍ରା ହେଲା ନାହିଁ । ପରଦିନ ସକାଳେ ହରେନ୍ଦ୍ର ବାବୁ ନିଦ୍ରାରୁ ଉଠି ଦେଖିଲେ ଯେ ହରଦାସୀ ପଲଙ୍କ ନିକଟରେ ଉଭା ହୋଇଅଛି ; ତାହାକୁ ଦେଖିବା ମାତ୍ରେ ପୂର୍ବ ରାତ୍ରର ଘଟଣାସବୁ ମନରେ ପଡ଼ିବାରୁ ତାହାଙ୍କୁ ବଡ଼ ଲଜ୍ଜା ବୋଧହେଲା । ସେ ହରଦାସୀ ସଙ୍ଗରେ ଲଜ୍ଜାବଶତଃ କୌଣସି କଥା ନ କହି ଅସ୍ତେ ଅସ୍ତେ ବାଣ୍ଡ ଘରକୁ ଚାଲି ଗଲେ । ପ୍ରଥମେ ଯେଠେର ଫିଠାଇ ଚାକରକୁ ଦୁଇଟି ଟଙ୍କା ପୁରସ୍କାର ଦେଇ ପୂର୍ବ ରାତ୍ର ଘଟଣା ପ୍ରକାଶ କରିବାକୁ ନିଷେଧ କଲେ ।

ହରେନ୍ଦ୍ର ବାବୁଙ୍କ ଜୀବନରେ ଅଳ୍ପ ଅଶାନ୍ତି, ବଡ଼ ଅଶାନ୍ତି, ଘୋର ଅଶାନ୍ତି, ଯେମନ୍ତ କି ଭୟାନକ ଦୁଷ୍କର୍ମ କରୁଅଛନ୍ତି । କିପ୍ରକାରେ ହରଦାସୀକୁ ମୁଖ ଦେଖାଇବେ, ତାହା ସଙ୍ଗରେ କଥା କହିବେ, କେବଳ ତାହାହିଁ ସବୁବେଳେ ଭାଳୁଅଛନ୍ତି । ସେ ଦିନ ଆଉ ମହୋକିଲମାନଙ୍କର କାର୍ଯ୍ୟ କରିବାକୁ ଇଚ୍ଛା ହେଲା ନାହିଁ; ସେମାନଙ୍କୁ ବିଦାୟ କରି ବାବୁ ଘର ଭିତରକୁ ଯାଇ ସ୍ତ୍ରୀର ହାତ ଧରି କହିଲେ, "ମୁଁ ଭାରି ଦୋଷ କରୁଅଛି, ମୋତେ କ୍ଷମା କର, ମୁଁ ନରକରେ ବୁଡ଼ି ଯାଉଅଛି, ମୋତେ ରକ୍ଷା କର" । ହରଦାସୀର ଆଖିରୁ ଲୁହ ପଡ଼ିଲା, ସେ ବାବୁଙ୍କୁ ପାଖରେ ବସାଇ କହିଲେ "ଆଉ ମଦ ଖାଇବେ ନାହିଁ" ।

ହରେନ୍ଦ୍ର । ମୁଁ ଯେ ମଦ ନ ପିଇଲେ ରହି ପାରେ ନାହିଁ ।

ହରଦାସୀ । ପୂର୍ବେ ତ ମଦ ଖାଉ ନ ଥିଲେ, କିନ୍ତୁ ବଡ଼ ଭଲ ଥିଲେ, ଏହିକ୍ଷଣି କାହିଁକି ରହି ପାରିବେ ନାହିଁ, ଅବଶ୍ୟ ପାରିବେ, ତୁମ୍ଭଙ୍କୁ ମଦ ଛାଡ଼ିବାକୁ ହେବ; ଦିନକରେ ନ ହେଉ, ଦୁଇ ଦିନରେ ନ ହେଉ, କ୍ରମେ୨ ଛାଡ଼ିବେ ।

ହରେନ୍ଦ୍ର । ମୁଁ ପ୍ରତିଜ୍ଞା କରୁଅଛି ମଦ ଛାଡ଼ିବ, ତେବେ ଦିନକେ ପାରିବ ନାହିଁ, କ୍ରମେ୨ ଛାଡ଼ିବ ।

ହରଦାସୀ । ପ୍ରତିଜ୍ଞା କରନ୍ତୁ, କଦାପି ଆଉ କେବେ ମଦ ପିଇବେ ନାହିଁ । ମୁଁ ଆପଣଙ୍କୁ ମୋ ହାତରେ ମଦ ଢ଼ାଳି ଦେବି, କ୍ରମେ୨ ମୁଁ ଆପଣଙ୍କଠାରୁ ମଦ ଛଡ଼ାଇବି ।

ହରେନ୍ଦ୍ର ବାବୁ ସେହି କଥାରେ ସମ୍ମତ ହେଲେ, ହରଦାସୀ ଛାତିରୁ ଯେମନ୍ତ ଖଣ୍ଡେ ପଥର ଗଡ଼ି ପଡ଼ିଲା । ତାହାର ମନ ଯେମନ୍ତ ଘୋର ଅନ୍ଧକାରରେ ଅନ୍ଧାରମୟ ହୋଇଥିଲା, ଏବେ ଅଲୋକମୟ ହେଲା । ସେ ସେହିକ୍ଷଣି ଚାକରକୁ ଡାକି ଦାଣ୍ଡଘରୁ ମଦ ବୋତଲ ଓ ଗ୍ଲାସ ଘର ଭିତରକୁ ଅଣାଇଲେ । ଏଥିଉତ୍ତାରେ ସ୍ୱାମୀଙ୍କୁ ସ୍ନାନ ଭୋଜନ କରାଇ କଚେରୀକୁ ପଠାଇଦେଲେ ।

---

## ତୃତୀୟ ଅଧ୍ୟାୟ

ହରେନ୍ଦ୍ର କୁମାର ଆଉ ମଦ ପିଅନ୍ତି ନାହିଁ । ଆହାର ପୂର୍ବରେ ତାହାଙ୍କର ସ୍ତ୍ରୀ ଯେତିକି ମଦ ପାନ କରିବାକୁ ଦିଅନ୍ତି ସେଥିରେ ତାହାଙ୍କର ତୃପ୍ତି ହୁଏ ନାହିଁ । କେତେକ ଦିନ ଏହି ପ୍ରକାରେ କଟିଲା । ତତ୍ପରେ ଟିକିଏ ମଦ ବେଶି ପାଇବା ନିମନ୍ତେ ହରେନ୍ଦ୍ର ବାବୁ ସ୍ତ୍ରୀ ନିକଟରେ କେତେ ଆପତ୍ତି, ବିନତି, କାକୁତି ଓ ଅବଶେଷରେ ପୀଡ଼ାପୀଡ଼ି କଲେ ।

ହରେନ୍ଦ୍ର ବାବୁ କହିଲେ, "ମୋତେ ବଡ଼ ଅସୁଖ ବୋଧ ହେଉଅଛି, ଆଜି ଟିକିଏ ବେଶି ମଦ ପିଇବା ପାଇଁ ଦେବାକୁ ହେବ" ।

ହରଦାସୀ । ତାହା ମୁଁ ଦେବି ନାହିଁ, ତୁମ୍ଭର ସ୍ତ୍ରୀ ହୋଇ ମୋର ନିଜ ହସ୍ତରେ ସ୍ୱାମୀଙ୍କି ବିଷ ପାନ କରାଇ ମାରି ପକାଉ ଅଛି । ମୁଁ ଯେତେ-

ବେଳେ ତୁମ୍ଭଙ୍କୁ ମଦ ଦେଇଁ, ମୋ ମନରେ ଯେ କଷ୍ଟ ହୁଏ ତାହା ତୁମ୍ଭେ ବୁଝି ପାରିବ ନାହିଁ, ଯେ ଦିନରାତି କରୁଅଛନ୍ତି ସେହି କେବଳ ବୁଝୁଅଛନ୍ତି ।

ହରେନ୍ଦ୍ର । ମଦ ପିଇଲେ କେହି ମରନ୍ତି ନାହିଁ, ବରଂ ପରିମିତ ପାନ କଲେ ଶରୀର ସବଳ ହୁଏ, ମନ ଆନନ୍ଦ ହୁଏ, କାମକରିବାକୁ ଇଚ୍ଛା ହୁଏ, କ୍ଲାନ୍ତି ବୋଧ ହୁଏ ନାହିଁ । ଦେଖ, ମୁଁ ମରି ଯାଉଥିଲି, ବାନ୍ତି ଖାଇବାରୁ ବଞ୍ଚିଅଛି, ସେହି ଅବଧି ପରିମିତରୂପେ ପାନ କରୁଅଛି, ମୋର ଆଉ ଗୋଟିଏ ଦିନହିଁ ଅସୁଖ ହେଉ ନାହିଁ ।

ହରଦାସୀ । ଯେ ପରିମାଣରେ ମଦ ପିଅ, ମୁଁ ତ ସେହି ପରିମାଣରେ ଦେଉଅଛି, ତେବେ ବେଶି ମାଗ କାହିଁକି ?

ହରେନ୍ଦ୍ର । ଦିନେ ଟିକିଏ ବେଶି ଖାଇଲେ କେହି ମରିଯାନ୍ତି ନାହିଁ ।

ହରଦାସୀ । ସେଥିରେ ସର୍ବନାଶ ହୁଏ, ଅଳପ ଅଳପ ଖାଉ, କ୍ରମେ, ମାତ୍ରା ବଢ଼େ ; ମୋର ବଡ଼ ଭୟ, କେଜାଣି ତୁମ୍ଭେ ମଗୁଆଲ ହେବ ·

ସେଦିନ ହରେନ୍ଦ୍ରଙ୍କର ମଦ ପିବାର ପିପାସା ଅତ୍ୟନ୍ତ ଅଧିକ, ହେବାରୁ ଘରଣୀଙ୍କର ସଦୁପଦେଶ ତାଙ୍କୁ ଭଲ ଲାଗିଲା ନାହିଁ । ହରେନ୍ଦ୍ର କହିଲେ "ମୋ ସକାଶେ ତୁମ୍ଭେ ବଡ ଭାବନା କର, ହୃଦୟରେ ସୁଖ ନାହିଁ କେବଳ ମଦ ମଦ ଦିନରାତି ଚିନ୍ତା କରୁଅଛ ; ମଦ ପାନ କରିବାର ଭଲ ମନ୍ଦ ମୁଁ ତୁମ୍ଭଠାରୁ ଅତି ଉତ୍ତମରୂପେ ବୁଝିପାରେ, ତୁମ୍ଭେ ଆଉ ବାରନ୍ତ କର ନାହିଁ; ମୁଁ ମଗୁଆଲ ହେଲେ, ମୋର ମାନ ସମ୍ଭ୍ରମ ନଷ୍ଟ ହେଲେ ତୁମ୍ଭେ କି ବିଚାର କର ମୋର ଲଜ୍ଜା ହେବ ନାହିଁ ?" ହରଦାସୀ କିଛି କହିଲେ ନାହିଁ, ଠିଆ ହୋଇ କାନ୍ଦିବାକୁ ଲାଗିଲେ । କାରଣ ସ୍ୱାମୀଙ୍କ କଥାରେ ତାହାଙ୍କର ହୃଦୟ ଫାଟିଗଲା, ପ୍ରାଣ ଆକୁଳ ହେଲା, ଦୀର୍ଘନିଃଶ୍ୱାସ ଛାଡ଼ି ଭଗବାନଙ୍କୁ ଡାକିଲେ । ଆଉଥରେ ହରେନ୍ଦ୍ର ବାବୁ ମଦ ପିଇବାକୁ ମାଗିବାରୁ ହରଦାସୀ ଢାଳି କରି ଖାଅ ବୋଲି କହି ସେ ବର୍ଷାରୁ ବିମୁଖ ହୋଇ ଚାଲିଗଲେ । ହରେନ୍ଦ୍ର ନିଜ ଅଭିଳାଷ ପୂର୍ଣ୍ଣ କରି ସୁଧା ଭ୍ରମରେ

ଗରଳ ପାନ କଲେ, ସେହି ରାତିରେ ହରିଦାସୀଙ୍କ ସଙ୍ଗେ ତାଙ୍କର ସାକ୍ଷାତ ହେଲା ନାହିଁ, ହରିଦାସୀ କଅଣ କରିବେ, କି ପ୍ରକାରେ ଏ ଅପଦରୁ ରକ୍ଷା ପାଇବେ, ଏ ବିଷୟ ଭାବି ମଦ ବୋତଲରେ ଜଳ ଢାଳି ରଖି ଦେଲେ । ରାତିରେ ସ୍ୱାମୀ ଭୋଜନ କରିବାକୁ ବସନ୍ତେ ପୁନଶ୍ଚ ହରିଦାସୀ ମଦ ଢାଳି ଦେବାକୁ ଲାଗିଲେ । ପ୍ରତିଦିନ ଯେ ପରିମାଣରେ ଦେଉଥାନ୍ତି, ଆଜି ମଧ୍ୟ ସେହି ପରିମାଣରେ ଦେଲେ । ହରେନ୍ଦ୍ର ଆଉ ଥରେ ମଦ ମାଗିବାରୁ ଆଜି ହରିଦାସୀ କୌଣସି ଆପତ୍ତି ନ କରି ମଦଗ୍ଲାସ ତାହାଙ୍କୁ ବଢ଼ାଇ ଦେଲେ । ଏଥର ହରେନ୍ଦ୍ର ବାବୁ ବୁଝି ପାରିଲେ ଯେ, ହରିଦାସୀ ଛଳନା କରି ମଦରେ ପାଣି ମିଶାଇ ରଖିଅଛି । ଏହା ବୁଝିଲେ ମଧ୍ୟ ସେ ତାହାଙ୍କ ସ୍ତ୍ରୀକୁ କିଛି କହିଲେ ନାହିଁ ।

ପରଦିନ ହରେନ୍ଦ୍ର ବାବୁ ବୋତଲେ ମଦ କିଣି ଦାଣ୍ଡଘର ଆଲମାରିରେ ବନ୍ଦ କରି ରଖିଲେ । ଘରର ଘରଣୀ ଯେମନ୍ତ ଜାଣି ନ ପାରେ ଏଥିପାଇଁ ଚାକରକୁ ଜଣାଇବା ନିମନ୍ତେ ନିଷେଧ କଲେ । ରାତିରେ ଦୁଇ ତିନି ଗ୍ଲାସ ମଦ ପାନ କରି ଭୋଜନ କରିବା ନିମନ୍ତେ ଘର ମଧ୍ୟକୁ ଗଲେ । ହରି-ଦାସୀ ନିୟମିତରୂପେ ଗ୍ଲାସ ପୂର୍ଣ୍ଣ କରି ତାହାଙ୍କର ହାତରେ ଦେଲେ । ବାବୁ ତାହା ପାନ କରି ଆଉ ଚାହିଁଲେ ନାହିଁ, କିମ୍ବା କୌଣସି କଥା କହିଲେ ନାହିଁ । ଏହି ପ୍ରକାରେ ଚାରି ପାଞ୍ଚ ଦିନ ଯାଉଁ ନ ଯାଉଁଣୁ ହରି-ଦାସୀ ବୁଝି ପାରିଲେ ଯେ ସ୍ୱାମୀ ଗୋପନରେ ମଦ ପାନ କରୁଅଛନ୍ତି । ହରିଦାସୀ ତାହା ଜାଣି ପାରିଲେ ସୁଦ୍ଧା ସେ କଥା ସ୍ୱାମୀଙ୍କୁ କହିଲେ ନାହିଁ ।

ବଙ୍ଗେଶ୍ୱର ଯୁଦ୍ଧ ନିୟମ ଉଠାଇ ଦେବାରୁ ତଦ୍ବିରୁଦ୍ଧରେ ପ୍ରତିବାଦ ସଭା କରିବା ନିମନ୍ତେ ହରେନ୍ଦ୍ର ବାବୁଙ୍କ ଜିଲ୍ଲାରେ ଗୋଟିଏ ସଭା ଆହୂତ ହୋଇଅଛି, ଆଜି ସନ୍ଧ୍ୟା ସମୟରେ ସଭା ବସିବ, ହରେନ୍ଦ୍ର ବାବୁ ଯୁଦ୍ଧ ପ୍ରଥାର ଉପକାରିତା ସମ୍ବନ୍ଧରେ ବକ୍ତୃତା କରିବେ, ଏହି ବିଜ୍ଞାପନ ଗୃହ-

ଅତ୍ରେ ଦଅହୋଇଅଛୁ । ସନ୍ଧ୍ୟାବେଳେ ହରେନ୍ଦ୍ର ବାବୁ ଘରକୁ ଫେରି ଅସିଲେ; ଦନଯାକ ପରଶ୍ରମ କର ଶରୀର ବଡ଼ କ୍ଳାନ୍ତ ହୋଇଅଛୁ, ଇଚ୍ଛା ହେଲା ଗ୍ଲାସେ ମଦ ପାନ କର କ୍ଳାନ୍ତ ଦୂର କରନ୍ତ; ଇଚ୍ଛା ହେବା ମାତ୍ରେ ତାହା କାର୍ଯ୍ୟରେ ପରଣତ ହେଲା । ହରେନ୍ଦ୍ର ବାବୁ କ ବକ୍ତୃତା କରବେ ତାହା ଭାବୁଅଛନ୍ତ; ସମ୍ମୁଖର ମେଜ ଉପରେ ସୁରାଦେବୀ ବୋତଲ ଭିତରେ ତଳ୨ ହୋଇ ବାବୁଙ୍କର ମନ, ପ୍ରାଣ ହରଣ କରୁଅଛୁ । ଥରେ ପାନ କରଅଛନ୍ତ, ଆଉ ଥରେ ପାନ କରବାକୁ ଇଚ୍ଛା ହେଲା । କ୍ରମେ୨ ମନ କାଗଜ କଲମରୁ ଯାଇ ମଦଗ୍ଲାସରେ ଲାଗି ରହଲା; ଥରେ, ଦୁଇଥର, ତନଥର ଏହ ପ୍ରକାରେ ମଦ ପାନ କରୁ୨ ନଜ ଅଭିଳାଷ ପୂର୍ଣ୍ଣ କର ଘୋର ମତ୍ତ୍ୱାଲା ହୋଇଗଲେ ।

ଏଆଡ଼େ ସଭାର ସମୟ ଉପସ୍ଥିତ, ସଭାମଣ୍ଡପ ଲୋକରେ ଲୋକାରଣ୍ୟ ହୋଇଅଛୁ, ହରେନ୍ଦ୍ର ବାବୁଙ୍କ ଅପେକ୍ଷାରେ ସଭାର ଲୋକମାନେ ବାଟ ଚାହିଁଅଛନ୍ତ । ସବୁ ଛଅଟା ବାଜଲା, ସାତଟା, ଆଠଟା ବାଜଲା, ତଥାପି ହରେନ୍ଦ୍ର ବାବୁଙ୍କର ଦେଖା ନାହିଁ । ତାହାଙ୍କର ଅଗମନର ବଲମ୍ବ ଦେଖି ତାଙ୍କ ନକଟକୁ ସମ୍ବାଦ ପଠାଗଲା; ଚାକର ଆସି ତାହାଙ୍କୁ ଜଣାଇଲା ଯେ ସଭାରୁ ଲୋକ ଡାକବା ନମନ୍ତେ ଅସିଅଛୁ । ସେ କଥା ଶୁଣି ତାଙ୍କର ଟିକଏ ଜ୍ଞାନ ହେବାରୁ ସେ ବଗୀ ପ୍ରସ୍ତୁତ କରବାକୁ କହଲେ । ପୁଣି ଉଠି ଦାଣ୍ଡ ଘରକୁ ଯାଇ ଆଉ ଗ୍ଲାସେ ମଦ୍ୟ ପାନ କର ବଗିରେ ଉଠିଲେ । ବଗୀ ଯେତେବେଳେ ସଭାମଣ୍ଡପ ନକଟରେ ଉପସ୍ଥିତ ହେଲା, ସେତେବେଳେ ଦେଖା ଗଲା ଯେ ହରେନ୍ଦ୍ର ବାବୁ ମତ୍ତ୍ୱାଲ, ସମ୍ପୂର୍ଣ୍ଣ ମତ୍ତ୍ୱାଲ; ଗାଡ଼ିରୁ ଓହ୍ଲାଇବାର ବଳ ତାହାଙ୍କଠାରେ ନାହିଁ, ତାହାଙ୍କୁ ଧରାଧର କର ସଭାସ୍ଥଳକୁ ନେଇ ଗଲେ । ସେ ବକ୍ତୃତା କରବା ପାଇଁ ଛିଡ଼ା୨ ଠିଆ ହେବା ମାତ୍ରକେ କମ୍ପିତ ହୋଇ ପଡ଼ି ଉଦ୍ଗାର କରବାକୁ ଲାଗିଲେ, ଏହ ଘଟଣା ଦେଖି ସଭା ମଧ୍ୟରେ ଗୋଟିଏ ଚହଳ ପଡ଼ଗଲା ।

ହରେନ୍ଦ୍ର ବାବୁ ଯେ ମଦ୍ୟପ, ଆଜ ସାଧାରଣ ଲୋକେ ବୁଝି ପାରଲେ । ଧୀର, ଶାନ୍ତ, ଭଦ୍ର ଓ ଦେବଚରିତ୍ର ହରେନ୍ଦ୍ର ବାବୁଙ୍କର ଏପ୍ରକାର ଅଧଃପତନ ହେବ, ଏହା କେହି ସ୍ୱପ୍ନରେ ଭାବି ନ ଥିଲେ ; ତାହାଙ୍କର ଏପରି ଗତି ଦେଖି ସଭାସ୍ଥ ଲୋକେ ନୀରବ ହୋଇ ରହିଲେ । ତାହା ପରେ କେହି ଦୁଃଖ, କେହି କ୍ଷୋଭ, କେହି ବା ରାଗ, କେହି ବା ଆନନ୍ଦ କରି କରି ନିଜ ନିଜ ଗୃହକୁ ପ୍ରସ୍ଥାନ କଲେ ।

ପରଦିନ ପ୍ରାତଃକାଳରେ ହରେନ୍ଦ୍ର ବାବୁ ଦାଣ୍ଡଘରେ ବସି ଆଉ ମହୋତ୍ସାମାନଙ୍କର ମକଦ୍ଦମା ଶୁଣିଲେ ନାହିଁ । ଲଜ୍ଜାରେ ଅଧୋବଦନ ହୋଇ, ନିକଟସ୍ଥ ବଖରାରେ ପ୍ରବେଶ କରି କବାଟ କିଳିଦେଲେ । ସେ ଘରେ ସେ କେତେବେଳେ ବା ଶୁଅନ୍ତି, କେତେବେଳେ ବା ବସନ୍ତି କିମ୍ବା ଏଣେତେଣେ ବୁଲି ବୁଲି ଚିନ୍ତା କରୁଥାନ୍ତି । ଯେମନ୍ତ ତାହାଙ୍କ ହୃଦୟରେ ଏକାବେଳକେ ଶତସହସ୍ର ବୃଶ୍ଚିକ ପ୍ରବେଶ କରି ଦଂଶନ କରୁଅଛନ୍ତି, ଥରେ ଥରେ ଏପରି ମନ ହେଉଅଛି କି ସୁଖର ସୁଖୀ, ଦୁଃଖର ଦୁଃଖୀ, ଜୀବନର ସହଚରୀ, ଅର୍ଦ୍ଧାଙ୍ଗିନୀ ହରିଦାସୀର ଗଳା ଧରି କାନ୍ଦି ମନର ଦୁଃଖ ଜଣାନ୍ତି । କିନ୍ତୁ ତାଙ୍କ ନିକଟରେ ଯେ ଅବିଶ୍ୱାସୀ ଅପରାଧୀ ହୋଇଅଛନ୍ତି । ଘର ମଧ୍ୟକୁ ଯିବାପାଇଁ ସାହସ ହେଲା ନାହିଁ ; ମନର ଅନଳ ମଧ୍ୟ ନିଭିଲା ନାହିଁ, ମନର ଅନଳ ନିଭାଇବା ପାଇଁ ଆଉ ଥରେ ମଦ ବୋତଲରୁ ସେହି ସଦ୍ୟ ପ୍ରାଣହନ୍ତା ଗରଳ ପାନ କରିବାକୁ ଲାଗିଲେ । ଯେ ଅନଳରେ କାଲି ତାଙ୍କର ସର୍ବନାଶ ହୋଇଅଛି, ସେ ଅପମାନିତ ଓ ହାସ୍ୟାସ୍ପଦ ହୋଇଅଛନ୍ତି, ଆଜି ପୁନର୍ବାର ସେହି ଅନଳରେ ଅବଶିଷ୍ଟ ମାନ, ମର୍ଯ୍ୟାଦା, ବୁଦ୍ଧି, ଜ୍ଞାନ, ତତ୍ତ୍ୱ, ଆୟୁ, ଜୀବନ ଓ ଶରୀର ଆହୂତି ଦେଇ ଜାଳି ଦେଲେ ।

ପୂର୍ବରାତ୍ରରେ ହରିଦାସୀ ସ୍ୱାମୀର ଅବସ୍ଥା ସ୍ୱଚକ୍ଷୁରେ ଦେଖିଥିଲେ । ପରଦିନ ସକାଳେ ଚାକର ଚାକରାଣୀମାନଙ୍କ ମୁଖରୁ ସଭାର ସମସ୍ତ

ସମାଚାର ଶୁଣି, ଏ ଜୀବନରେ ଆଉ ସୁଖ ହେବ ନାହିଁ, ସ୍ୱାମୀଙ୍କୁ ଉଦ୍ଧାର କରିବାର ଆଉ ଆଶା ନାହିଁ, ଏହା ମନେ୨ ବିଚାର କରି ହରଦାସୀ ଆତ୍ମହତ୍ୟା କରିବାକୁ ସ୍ଥିର କଲେ । କିନ୍ତୁ ଅଳ୍ପଦିନ ହେଲା ସେ ଗୋଟିଏ ପୁତ୍ରସନ୍ତାନ ପ୍ରସବ କରିଅଛନ୍ତି ; ଏହି ତାହାଙ୍କର ତୃତୀୟ ପୁତ୍ର । ସେ ମରିଗଲେ ଏହି ତିନୋଟି ପିଲା କଅଣ କରିବେ ଏହା ଚିନ୍ତା କରୁ୨ ଦିନ ଅତିବାହିତ ହେଲା ।

ସେ ଦିନ ହରେନ୍ଦ୍ର ବାବୁ ଓ ହରଦାସୀ କିଛି ଆହାର କରି ନ ଥିଲେ । ଦ୍ୱିତୀୟ ଦିନରେ ବଡ ପୁତ୍ରଟି ଯାଇ ପିତାଙ୍କୁ ଡାକିଲା, "ବାପା ଆସ, ମା-ଅଙ୍କୁ ଜ୍ୱର ହୋଇଅଛି, ମା ଶୋଇ୨ କାନ୍ଦୁଛନ୍ତି, ତାହାଙ୍କୁ ଦେଖିବ ଆସ ।"

ବାପାଙ୍କଠାରେ ଆଉ ମନୁଷ୍ୟତ୍ୱ ନାହିଁ, ବାପା ଏହିକ୍ଷଣି ପଶୁଠାରୁ ଅଧମ, ତାଙ୍କର ହୃଦୟ ପାଷାଣରୁ କଠିନ । ବାପା ପୁଅକୁ କୌଣସି ଉତ୍ତର ଦେଲେ ନାହିଁ, ପିଲାଟି ମଧ୍ୟ କିଛି ବୁଝି ପାରିଲା ନାହିଁ । ପୂର୍ବେ ସେ ଯେମନ୍ତ ବାପାର ଗଳାଧରି ଅହ୍ଲାଦିତ ହେଉଥାଏ, ଆଜି ମଧ୍ୟ ସେହିପରି କରିବାକୁ ଲାଗିଲା, ବାପା ତାହାର ଗାଲରେ ବଡ଼ ଜୋରରେ ଗୋଟାଏ ଚାପୁଡ଼ା ମାରି ତାହାକୁ ବିଦାୟ କରିଦେଲେ । ପିଲାଟି ଘର ଭିତରକୁ ଯାଇ କାନ୍ଦି୨ ମାତା ପାଖରେ ସବୁ କଥା କହିଲା । ପ୍ରଥମ ଦିନ ପରି ଦ୍ୱିତୀୟ ଦିନ ଗଲା, ତଥାପି ହରେନ୍ଦ୍ର ବାବୁ ଘରୁ ବାହାରି ଦାଣ୍ଡକୁ ଆସିଲେ ନାହିଁ ।

ତୃତୀୟ ଦିନର ସକାଳେ ହରଦାସୀ ଶେଯରୁ ଉଠିଲେ । କାନ୍ଦି୨ ତାହାଙ୍କର ଚକ୍ଷୁ ଫୁଲି ଯାଇଅଛି । ଭାବି୨ ଶରୀର ଦୁର୍ବଳ, ପାଦ ଥରଥର ଓ ମୁଣ୍ଡ ବୁଲାଉଅଛି । ହରଦାସୀ କୋଳରେ ପିଲାଟିକୁ ଘେନି ଅସ୍ତେ୨ ପିଣ୍ଡାରେ ଆସି ବସିଲେ, ଚାକରକୁ ପଚାରି ଜାଣି ପାରିଲେ ଯେ, ବାବୁ ସେହି ପ୍ରକାରେ କବାଟ କିଳି ବସିଅଛନ୍ତି । ହରଦାସୀ ଦାଣ୍ଡ ଘରକୁ ଆସି ଧୀରେ ଧୀରେ କବାଟ ଫିଟାଇବାକୁ ନିବେଦନ କଲେ,

କେତେ ମିନତି କଲେ, ଅବଶେଷରେ ଦ୍ୱାରବନ୍ଧରେ ନିଜ ମୁଣ୍ଡ ପିଟିବାକୁ ଲାଗିଲେ । ତେତେବେଳେ କୌଣସି ଉପାୟ ନ ଦେଖି ହରେନ୍ଦ୍ର ବାବୁଙ୍କୁ କବାଟ ଫିଟାଇବାକୁ ହେଲା । ହରଦାସୀ ଦେଖିଲେ ଯେ, ତିନି ଦିନରେ ସ୍ୱାମୀଙ୍କର ରୂପ ସମ୍ପୂର୍ଣ୍ଣ ବଦଳି ଯାଇଅଛି, ଚକ୍ଷୁ ବସି ଯାଇଅଛି, ମୁଖ କଳା ପଡିଅଛି । ହରଦାସୀ ଘର ଭିତରକୁ ଯାଇ, କବାଟ କିଳି, ସ୍ୱାମୀଙ୍କର ପାଦ ଧରି, ମଦ ଛାଡିବା ପାଇଁ କାନ୍ଦି କାନ୍ଦି କେତେ କେତେ ବିନତି ଓ ନିବେଦନ କଲେ ; ଆହୁରି କହିଲେ ପିଲା ତିନୋଟିଙ୍କର ମୁଖକୁ ଦେଖ ; ଯାହା ହେବାର ତାହା ହୋଇ ଯାଇଅଛି, ଏହିକ୍ଷଣି ସାବଧାନ ହେଲେ ସବୁ ବିଷୟ ଭଲ ହେବ । ଏହା କହି ସେ କେତେ ବୁଝାଇଲେ, କେତେ ସାହସ ଓ ଭରସା ଦେଲେ ; ହରେନ୍ଦ୍ର ବାବୁ ନୀରବ ହୋଇ ଶୁଣିଲେ ସତ୍ୟ, କିନ୍ତୁ ଗୋଟିଏ କଥା କହିଲେ ନାହିଁ ।

---

## ଚତୁର୍ଥ ଅଧ୍ୟାୟ

ଏହି ପ୍ରକାରେ ଛ ମାସ ଗତ ହୋଇଅଛି । ଲକ୍ଷ୍ମୀ ହରଦାସୀକୁ ଛାଡି ଯାଇଅଛନ୍ତି, ସୁରାଦେବୀ ତାହାର ସ୍ୱାମୀଙ୍କୁ ଏକାବେଳକେ ଗ୍ରାସ କରିଅଛି । ପୂର୍ବପରି ଚରିତ୍ରବାନ୍ ଭଦ୍ରଲୋକ ହରେନ୍ଦ୍ର ବାବୁଙ୍କ ନିକଟରେ ସ୍ଥାନ ପାନ୍ତି ନାହିଁ । ସେମାନଙ୍କ ବଦଳେ କେତେ କେତେ ଦୁଷ୍ଟ, ଦୁଶ୍ଚରିତ୍ର, ମତୁଆଳ ତାଙ୍କର ସଙ୍ଗୀ ହୋଇଅଛନ୍ତି । ଦିନ ରାତ୍ରି ମଧ୍ୟରେ ଏକ ଦଣ୍ଡହିଁ ବାବୁଙ୍କର ମତି ସ୍ଥିର ହୁଏ ନାହିଁ । କଚେରୀ ଯିବା ପ୍ରାୟ ବନ୍ଦ ହୋଇଅଛି । ମକଦ୍ଦମାକାରୀ-ମାନେ ଆଉ ତାଙ୍କ ନିକଟକୁ ଆସନ୍ତି ନାହିଁ । ଯେ ମାସକୁ ଚାରି ପାଞ୍ଚଶତ ଟଙ୍କା ଆୟ କରୁଥିଲେ, ତାହାଙ୍କର ମାସକୁ ଟ ୧୦୦ ଆୟ କରିବା କଷ୍ଟ-କର ହେଉଅଛି, ଏମନ୍ତ କି ସମୟ ସମୟରେ ବସା ଖରଚ ମଧ୍ୟ ଚଳେ ନାହିଁ । ବଗୀ ଘୋଡ଼ା ବିକା ହେଲାଣି, ମୁଦିମାନଙ୍କର ଅନେକ ଟଙ୍କା ବାକି ପଡ଼ିଲାଣି ।

ଆଉ ସେମାନେ ଚାଉଳ ପଇସ ଉଧାର ଦେଉ ନାହାନ୍ତି । ଘରବାଲା ଉଠି ଯିବା ନିମନ୍ତେ ନୋଟିସ ଦେଲାଣି । ସୁଣ୍ଡୀ ମାମୁ ଆସି ଦାଣ୍ଡଦ୍ୱାରେ ବସିଲାଣି । ପୂର୍ବରେ ଘର ଖରଚର ହିସାବ ସବୁ ହରଦାସୀ ରଖୁଥିଲେ; ବର୍ତ୍ତମାନ ମଧ୍ୟ ସେ ହିସାବ ରଖୁଅଛନ୍ତି; କିନ୍ତୁ ତାହାଙ୍କର ଦେହର ଅଲଙ୍କାର ସବୁ ବନ୍ଧକ ପଡ଼ିଲାଣି । ପିଲାମାନଙ୍କର ପିନ୍ଧିବା ପାଇଁ ଲୁଗା ନାହିଁ, ସେମାନେ ଛିଣ୍ଡା କନା ପିନ୍ଧି ବୁଲୁଅଛନ୍ତି ବସାରେ ତିନି ଜଣ ଚାକର, ଦୁଇ ଜଣ ଚାକରଆଣୀ, ଜଣେ ପୂଜାହାରୀ; ସେମାନେ ଜଣ ଜଣ କରି ସମସ୍ତେ ବିଦାୟ ନେଇଅଛନ୍ତି । ଏବେହେଁ ଜଣେମାତ୍ର ଚାକରଆଣୀ ଅଛି, ସେ ଯାହା ପାରେ ତାହା କରେ, କିନ୍ତୁ ବାକି ଘର ପାଇଟି ସମସ୍ତ ହରଦାସୀଙ୍କୁ କରିବାକୁ ହୁଏ, ଘର ପାଇଟି ଓ ଭାବନା କରି କରି ତାଙ୍କ ଶରୀର ଜୀର୍ଣ୍ଣଶୀର୍ଣ୍ଣ ହୋଇ ଗଲାଣି ।

ହରେନ୍ଦ୍ର ବାବୁଙ୍କର ସୁନାମ, ସୁଯଶ, ସୁଖ୍ୟାତି ଅଥଳ ସୁରା-ସାଗରର ତଳେ ଛ ମାସ ହେଲା ବୁଡ଼ିଗଲାଣି । ଭାର୍ଯ୍ୟାପ୍ରତି ଆଉ ଅନୁରାଗ ନାହିଁ, ପିଲାମାନଙ୍କ ପ୍ରତି ମାୟା ମମତା ନାହିଁ; ତାହାଙ୍କର ସୁଖର ଓ ସୁନାର ସଂସାର ଯେ ଚୂନା ହୋଇ ଯାଉଅଛି ସେ କଥା ପ୍ରତି ତାହାଙ୍କର ଭ୍ରୂକ୍ଷେପ ନାହିଁ । କେବଳ ପେଟ ପୂର୍ତ୍ତି କରି ମଦ୍ୟପାନ କରିବାକୁ ପାଇଲେ ଆଉ ତାଙ୍କର କିଛି ଚିନ୍ତା ନ ଥାଏ ; ମନରେ ଆନନ୍ଦ ହୁଏ । ବଗୀ ଘୋଡ଼ା କେତେ ଦିନରୁ ବିକ୍ରୀ ଲାଗିଅଛି, ଏବଂ ମୂଲ୍ୟବାନ୍ ଆଇନ୍ ବହି-ସବୁ ଅଳ୍ପ ମୂଲ୍ୟରେ ବା ଅଧିକ ମୂଲ୍ୟରେ ବିକ୍ରୟ ହୋଇ ମଦପିଆ ଲାଗି-ଅଛି । ବର୍ତ୍ତମାନ ହରେନ୍ଦ୍ର ବାବୁଙ୍କର ସୁଣ୍ଡୀ ଦୋକାନ ପ୍ରଧାନ ମଠ ବା ଆଖଡ଼ା ଅଟେ । ମାସ ମଧ୍ୟରେ ଅର୍ଦ୍ଧେକ ଦିନ କେଉଁଠାରେ ରହନ୍ତି ତାହା ଜଣାଯାଏ ନାହିଁ । କେତେ କେତେ ରାତ୍ରିରେ ହରଦାସୀ ପିଲାମାନଙ୍କୁ ଘେନି ସ୍ୱାମୀଙ୍କ ଅପେକ୍ଷାରେ ବାଟ ଚାହିଁ ଚାହିଁ ରାତି ଉଜାଗର ହୁଅନ୍ତି ।

ସନ୍ଧ୍ୟାବେଳ; ସୂର୍ଯ୍ୟ ପ୍ରାୟ ମାଆ କୋଳକୁ ଗଲେଣି । ସାନ ପିଲାଟି

ଭୋକରେ କାତର ହୋଇ ଛଟପଟ ହେଉଅଛି । ଅହାର ଅଭାବରୁ ହରଦାସୀଙ୍କ ସ୍ତନରେ ଦୁଗ୍ଧ ନାହିଁ । ଗଉଡୁଣୀ ତାର ପାଉଣା ନ ପାଇବାରୁ ସଂଗିକର ଚାଲି ଯାଇଅଛି, ଆଉ ଦୁଧ ଅଣେ ନାହିଁ । ପୂର୍ବରେ ଯେ ବଣିଆ ତାହାଙ୍କର ଅଲଙ୍କାର ଗଢି ଦେଉଥିଲା, ତାହାର ଦୋକାନକୁ ଆଜ ହରଦାସୀ ତାଙ୍କର ଶେଷ ଅଲଙ୍କାର ରୂପାଖଡୁ ଦୁଇପଟ ବିକ୍ରୀ ନିମନ୍ତେ ପଠାଇ ଦେଇଅଛନ୍ତି । ଆଜ ହରଦାସୀଙ୍କ ହାତରେ ଗୋଟିଏ ଟଙ୍କା ମାତ୍ର ସମ୍ବଳ ଅଛି । ଗଉଡୁଣୀକୁ ଡାକ ପଠାଇ ହାତରେ ଟଙ୍କାଟି ଧରି ବସି ୨ ଭାବୁଅଛନ୍ତି, ଯେ ଗଉଡୁଣୀ ଅସିଲେ ତାହାକୁ ଏହି ଟଙ୍କାଟି ଦେବେ, ପରେ ଖଡୁ ବିକା ଗଲେ ତାହାର ଉଧାର ପରିଶୋଧ କରି ପିଲାର ପ୍ରାଣ ରକ୍ଷା କରିବେ; ଏମନ୍ତ ସମୟରେ ହରେନ୍ଦ୍ର ବାବୁ ଅସି ଉପସ୍ଥିତ ହେଲେ ।

କେତେ ଦିନ ହେଲା ହରେନ୍ଦ୍ର ହରିଦାସୀ ନିକଟରେ ବସି ନାହାନ୍ତି, କେତେକ ଦିନ ହେଲା ତାହା ନିକଟରେ ବସି ଭଲକରି କଥା କହି ନାହାନ୍ତି; କିନ୍ତୁ ଅଜି ସେ ହରିଦାସୀ ନିକଟରେ ବସିଲେ, ସାନ ପିଲାଟିକୁ କୋଳରେ ଧରିଲେ; ପତିପ୍ରାଣା ଭାର୍ଯ୍ୟାର ଜୀବନରେ ଯେମନ୍ତ ହଠାତ ଗୋଟିଏ ନୂଆ ଯୁଗ ଉପସ୍ଥିତ ହେଲା; ତାହାଙ୍କର କ୍ଷୁଦ୍ର ହୃଦୟଟି ଆନନ୍ଦ ଓ ଅହ୍ଲାଦରେ ପରିପୂର୍ଣ୍ଣ ହୋଇଗଲା ।

ଗତ ରାତ୍ରିରୁ ହରେନ୍ଦ୍ର ବାବୁ ବସାକୁ ଅସି ନ ଥିଲେ । ଏପର୍ଯ୍ୟନ୍ତ ସେ କିଛି ଖାଇ ନାହାନ୍ତି, ସେ ଅତ୍ୟନ୍ତ କ୍ଷୁଧିତ ହୋଇଥିଲେ, ସେ ହରିଦାସୀ ନିକଟରୁ କିଛି ଆହାର କରିବାକୁ ଖୋଜିଲେ । ହରିଦାସୀଙ୍କ ଘରେ କିଛି ନ ଥିଲା । ପୁଞ୍ଜି ମଧ୍ୟରେ ତାହାଙ୍କର ସେହି ଗୋଟିକ ଟଙ୍କା ଗଉଡୁଣୀକୁ ଦେବା ନିମନ୍ତେ ରଖିଅଛନ୍ତି । କିନ୍ତୁ ସେ କଥା ସ୍ୱାମୀଙ୍କ ମୁଖକୁ ଦେଖି ପାସୋରି ପକାଇଲେ ।

ସ୍ୱାମୀଙ୍କି କିଛି ଖାଇବାକୁ ଦେବା ନିମନ୍ତେ ସେ ବ୍ୟସ୍ତ ହୋଇ ଉଠିଲେ;

କହିଲେ, "ଦାସୀ ଗଉଡୁଣୀଙ୍କ ଡାକିବା ନିମନ୍ତେ ଯାଇଅଛି, ସେ ନ ଆସିଲେ କିଏ ଜଳଖିଆ ଆଣିଦେବ ?"

ହରେନ୍ଦ୍ର—ମୋତେ ବଡ଼ ଭୋକ ଲାଗୁଛି, ଦାସୀ କେତେବେଳେ ଆସିବ, ମୋତେ ପଇସା ଦିଅ ମୁଁ ନିଜେ କିଣି ଆଣିବି ।

ହରଦାସୀ ତାହାଙ୍କର ହାତରେ ଟଙ୍କାଟି ଦେଲେ । ହରେନ୍ଦ୍ର ଆଉ କାଳ ବିଳମ୍ବ ନ କରି ପିଲାଟିକି ପକାଇ ଦେଇ ଆନନ୍ଦମନରେ ସେ ଦିନକ ପାଇଁ ଚାଲିଗଲେ ।

. କିଛିକ୍ଷଣ ଉତ୍ତାରେ ଗଉଡୁଣୀ ଆସିଲା, ହରଦାସୀ ତାହାର ହାତ ଧରି କହିଲେ, "ମୋର ଖାତ୍ରୁ ଦୁଇପଟ ବାକୀ ହେବାମାତ୍ରକେ ମୁଁ ତୋର ପାଉଣା ପରିଶୋଧ କରିବି ; ମୋର ମୁଣ୍ଡ ଖାଉଛି, ଉଠାଣ ବନ୍ଦ କରିବୁ ନାହିଁ, ଏ ସମୟରେ ତୁ ଦୟା ନ କଲେ ମୁଁ ମୋର ସାନ ପିଲାଟିକି ବଞ୍ଚାଇ ପାରିବି ନାହିଁ ।"

ଗଉଡୁଣୀ ସେ ଘରୁ ଅନେକ ଟଙ୍କାକଉଡ଼ି ନେଇଅଛି । ହରଦାସୀର କାତରଭାବ ଦେଖି ଗଉଡୁଣୀ ମନରେ ବଡ଼ ଦୁଃଖ ହେଲା । ସେ ନିୟମାନୁସାରେ ଦୁଧ ଉଠାଣ ଦେବାକୁ ସ୍ୱୀକାର କଲା ଓ ଦୁଧ ସେ ଦିନକ ପାଇଁ ମାପି ଦେଇ ଚାଲିଗଲା ।

ହରଦାସୀ ଦୁଧ ଅଉଟିବା ପାଇଁ ଯିବା ସମୟରେ ତାହାର ବଡ଼ପୁଅ ଖଣ୍ଡେ ଚିଠି ଆଣି ମାତାଙ୍କ ହସ୍ତରେ ଦେଲା ।

ହରଦାସୀର ପିତା ରାମେଶ୍ୱର ବାବୁ ଲେଖିଅଛନ୍ତି :—

"ମା ହରଦାସୀ, ଅନେକ ଦିନ ହେଲା ତୁମ୍ଭମାନଙ୍କର କୌଣସି ସଂବାଦ ପାଇ ନାହିଁ ; ତୁମ୍ଭକୁ ଦୁଇ ତିନି ଖଣ୍ଡ ପତ୍ର ଲେଖିଲିଣି; ତାହାର କୌଣସି ଉତ୍ତର ଦେଇ ନାହିଁ; ତୁମ୍ଭେ କି ମୋ ଉପରେ ରାଗିଅଛ ? କିମ୍ବା ମୋତେ ପାସୋରି ପକାଇଅଛ । ମୁଁ ତୁମ୍ଭମାନଙ୍କୁ ଥରେ ଦେଖିବାପାଇଁ ଇଚ୍ଛା କରିଅଛି ; ଛୁଟି ସକାଶେ ଦରଖାସ୍ତ କରାହୋଇଅଛି : ଛୁଟି ପାଇଲେ

ତୁମ୍ଭମାନଙ୍କ ଘରକୁ ଯାଇ ଦେଖା କରିବ । ଏବଂ ଅଳ୍ପଦିନ ନିମନ୍ତେ ତୁମ୍ଭ-ମାନଙ୍କୁ କଲିକତା ନେଇ ଆସିବ ।"

ତୁମ୍ଭର ଶୁଭାକାଙ୍କ୍ଷୀ,
ଶ୍ରୀ ରମେଶ୍ୱର ବନ୍ଦ୍ୟୋପାଧ୍ୟାୟ ।

ବାପା ଆସିବେ, ଏ ସଂବାଦରେ ହରଦାସୀଙ୍କର ମନରେ ହର୍ଷରେ ବିଷାଦ ଉପସ୍ଥିତ ହେଲା । ଦ୍ୱିତୀୟ ପୁଅର ଅନ୍ନପ୍ରାଶନ ସମୟରେ ଯେତେବେଳେ ପିତା ଏ ଘରକୁ ଆସିଥିଲେ, ସେ ସମୟରେ ଏ ଘରର କିପରି ଅବସ୍ଥା ଥିଲା, ବର୍ତ୍ତମାନ କି ହୋଇଅଛି ? ସେ ସମୟରେ ହରଦାସୀଙ୍କ ଛାଡ଼ି ଲକ୍ଷ୍ମୀଙ୍କର ଦୟା ଥିଲା ; ତାହାଙ୍କର ମନରେ ସୁଖ ଥିଲା, ଘରେ ଆନନ୍ଦ ଥିଲା, ଲୋକମାନଙ୍କ ସଙ୍ଗରେ ମୁଖ ଟେକି କଥା କହିବାର କ୍ଷମତା ଥିଲା; ଏହି ଛଅ ମାସ ମଧ୍ୟରେ ସେ ସବୁ ଯାଇଅଛି । ଅଭାଗିନୀ ସ୍ୱାମୀଙ୍କୁ ହରାଇଅଛନ୍ତି, ତାଙ୍କର ହୃଦୟ ଫାଟି ଯାଇଅଛି, ଆଶା ନିରାଶାରେ ପରିଣତ ହୋଇଅଛି ; ତାହାଙ୍କର ସୁଖ-ସୂର୍ଯ୍ୟ ପଶ୍ଚିମ ଗଗନରେ ଢଳି ପଡ଼ିଲେଣି । ବାପାଙ୍କୁ ମୁଖ ଦେଖାଇବା ପାଇଁ ହରଦାସୀଙ୍କୁ ବଡ଼ ଲଜ୍ଜା ବୋଧ ହେଲା । ଥରେ ମନରେ ଭାବିଲେ, ବାପାଙ୍କ ଆସିବା ନିମନ୍ତେ ବାରଣ କରିବି, କିନ୍ତୁ ସେ ତାହା ଲେଖି ପାରିଲେ ନାହିଁ । ଏହି ପ୍ରକାରେ କେତେ ଦିନ ଗତ ହେଲା ।

ହରଦାସୀଙ୍କର କୌଣସି ଭାଷା ନ ପାଇବାରୁ ରମେଶ୍ୱର ବାବୁଙ୍କର ମନ ବଡ଼ ଚଞ୍ଚଳ ହେଲା । ଛୁଟିର ପରଦିନ ପ୍ରାତଃକାଳରେ ସେ ଉଠି ଯାତ୍ରା କଲେ । କଲିକତାଠାରୁ ଜାମାତାଙ୍କର କାର୍ଯ୍ୟ ସ୍ଥଳ ଏକ ଦିନର ପଥ ଅଟେ । ବସାରେ ପହଞ୍ଚୁ ସନ୍ଧ୍ୟା ହେଲା । ରମେଶ୍ୱର ବାବୁ ବସାରେ ପ୍ରବେଶ କରି ଦେଖିଲେ ଯେ, ବାଣ୍ଡ ମେଲାରେ ଲୋକ ଜଣ କେହି ନାହାନ୍ତି, ସେଠାରେ ଆଉ ସେ ସୁପ୍ରଶସ୍ତ ଗାଲିଚା ନାହିଁ, ଗୋଟିଏ ମାତ୍ର

ଭଙ୍ଗା ଚଉକ ପଡ଼ିଅଛି । ଘର ତଳ ଧୂଳିରେ ପରିପୂର୍ଣ୍ଣ, ଉପର ଭାଗ ମାକଡ଼ସା ଜାଲରେ ପୂର୍ଣ୍ଣ, ପ୍ରତି କୋଣରେ ବେଙ୍ଗମାନେ କଟର୍ କଟର୍ କରୁଅଛନ୍ତି । ଘରର ଅବସ୍ଥା ଦେଖି ରମେଶର ବାବୁ ମନେ କଲେ, ହୋଇପାରେ ନରେନ୍ଦ୍ର ବାବୁ ଏ ବସା ଛାଡ଼ି ଦେଇ ଅନ୍ୟ ବସାକୁ ଯାଇଅଛନ୍ତି ।

ସେ ପିଣ୍ଡାରେ ଠିଆ ହୋଇ ଏହି ସବୁ କଥା ଭାବିବା ସମୟରେ ଘର ମଧ୍ୟରୁ ବାଳକର ଅସ୍ଫୁଟ ସ୍ୱର ଶୁଣିବାକୁ ପାଇଲେ । ରମେଶର ବାବୁ ତାଙ୍କର ବଡ଼ ନାତିର ନାମ ଧରି ଡାକିଲେ ; ସେ ଡାକ ଶୁଣି ହରଦାସୀ ପିଲା ଦୁଇଟିଙ୍କୁ ଦୁଇ ଖଣ୍ଡ ଲୁଗା ପିନ୍ଧାଇ, ତୁମ୍ଭମାନଙ୍କର ଅଜା ଆସିଅଛନ୍ତି ବୋଲି କହି, ତର ତର କରି ସେମାନଙ୍କୁ ଦାଣ୍ଡଘରକୁ ପଠାଇ ଦେଲେ ଏବଂ ନିଜେ ଖଣ୍ଡେ ପରିଷ୍କାର ଲୁଗା ପିନ୍ଧି ଦାଣ୍ଡ କବାଟ ପୂର୍ଣ୍ଣି ରଖିବାପାଇଁ ଚେଷ୍ଟା କଲେ । ନରେନ୍ଦ୍ର ବାବୁ ଯେ ସେ ସମୟରେ ଘରେ ନ ଥିଲେ, ଏକଥା କହିବା ବାହୁଲ୍ୟ ମାତ୍ର ।

କିଛିକ୍ଷଣ ପରେ ରମେଶର ବାବୁ ନାତି ଦୁଇ ଜଣଙ୍କର ହାତ ଧରି ଘର ଭିତରକୁ ଆସିଲେ । ହରଦାସୀ ପିତାଙ୍କର ଚରଣରେ ପ୍ରଣାମ କରି ତାହାଙ୍କର ବସିବା ନିମନ୍ତେ ଖଣ୍ଡେ ଆସନ ଆଣି ଦେଲେ । ପିତା ଦେଖିଲେ ଯେ ତାଙ୍କର ସୁନାର ପ୍ରତିମା କାଳୀମୂର୍ତ୍ତିରେ ପରିଣତ ହୋଇଅଛି, ଅସ୍ଥିପଞ୍ଜର ବାହାରି ପଡ଼ିଅଛି, ତାଙ୍କର ମୁଖରେ ସେ ଶ୍ରୀ ନାହିଁ, ପିନ୍ଧିବା ଲୁଗା ଖଣ୍ଡେ ଜୀର୍ଣ୍ଣ ଶାଢ଼ୀ ମାତ୍ର, ହାତରେ ୫ । ୬ ପଟ କାଚ ଚୁଡ଼ୀ ଝୁଲୁଅଛି ।

ପିତା ଆସନରେ ବସି ପଚାରିଲେ, "ମା ହରଦାସୀ, ଏ କଅଣ ହୋଇଅଛି ? ତୁ ଯେ ଆଉ ଚହ୍ନା ଯାଉ ନାହୁଁ, ତୋର ଦେହଟା ଏତେ ଖରାପ ହେଲା କାହିଁକି ?"

କେଜାଣି ବାପା କଅଣ ହୋଇଅଛି, ଖାଇବାକୁ ରୁଚି ହେଉ ନାହିଁ, କିଛିହିଁ ଖାଇ ପାରେ ନାହିଁ । ଏହା କହି ହରଦାସୀ ହାଣ୍ଡିଶାଳକୁ ଯାଇ

ନିଜେ ଗୋଟିଏ ହୁକାରେ ଗୁଡାଖୁ ସଜାଡ଼ି ପିତାଙ୍କ ହାତରେ ଅଣି ଦେଲେ ।

ରମେଶ୍ୱର । ଶ୍ୱଶୁରମାନେ କାହାନ୍ତି ?

ହରଦାସୀ । ସେମାନେ ଆଉ କେହି ନାହାନ୍ତି, ସମସ୍ତେ ଛୁଟି ପାଇ-ଅଛନ୍ତି ।

ରମେଶ୍ୱର । ଶ୍ୱଶୁରାଣୀ ?

ହରଦାସୀ । ତୁମ୍ଭ ନିମନ୍ତେ ଜଳଖିଆ ଆଣିବା ପାଇଁ ବଜାରକୁ ଯାଇଛି ।

ରମେଶ୍ୱର । ଦାଣ୍ଡଘରେ ଏତେ ଅଳନ୍ଧୁ କାହିଁକି ? ଓକିଲଙ୍କ ଅଫିସରେ ଆସନ ନାହିଁ କାହିଁକି ? ହରଦାସୀ ମନେ କରିଥିଲେ ଯେ ତାହାଙ୍କର ଚତୁରପଣ ଠିକ୍ ରଖିବେ, କିନ୍ତୁ ତାଙ୍କ ଘର କଥାବାର୍ତ୍ତାରୁ ସବୁ ପ୍ରକାଶ ହୋଇ ପଡ଼ିଲା । ହରଦାସୀ କାନ୍ଦିଲେ । ଏଥିଉତ୍ତାରେ ପିତା ତାହାଙ୍କୁ ଅନେକ କଥା ପଚାରିଲେ, କିନ୍ତୁ ହରଦାସୀ କୌଣସି କଥାର ଉତ୍ତର ନ ଦେଇ ଠିଆ ହୋଇ ରହିଲେ । କନ୍ୟାର ସୁଖ ସଂସାରରେ ଯେ କି ସର୍ବନାଶ ହୋଇଅଛି, ତାହା ରମେଶ୍ୱର ବାବୁଙ୍କର ବୁଝିବାପାଇଁ ବିଳମ୍ବ ହେଲା ନାହିଁ ।

ଦାସୀ ବଜାରରୁ ଫେରି ଆସନ୍ତେ ହରଦାସୀ ପିତାଙ୍କୁ ଜଳଖିଆ ଦେଲେ ଓ ନିଜ ହସ୍ତରେ ପଲଙ୍କ ସଜାଡ଼ି ଦେଲେ । ପରେ ତାହାଙ୍କୁ ଶଯ୍ୟାରେ ବିଶ୍ରାମ କରିବାକୁ କହି ନିଜେ ରାନ୍ଧିବାପାଇଁ ରନ୍ଧନଶାଳକୁ ଗମନ କଲେ ।

ରମେଶ୍ୱର ବାବୁ ନାତିମାନଙ୍କ ନିମନ୍ତେ ଯେ ସବୁ ଖେଳଣା ଅଣି-ଥିଲେ, ସେହି ଖେଳଣା ସେମାନଙ୍କୁ ବାହାର କରି ଦେଇ ସେମାନଙ୍କ ସଙ୍ଗରେ କିଛିକ୍ଷଣ ଖେଳିବାକୁ ଲାଗିଲେ । ସେମାନେ ପିତାଙ୍କର ଆଦର ଓ ସ୍ନେହ ପାସୋରି ଯାଇଥିଲେ । ସଂସାରରେ ଏକ ମାଆ ଛଡ଼ା ସେମାନଙ୍କୁ ଆଦର ଓ ସ୍ନେହ କରିବାକୁ ଯେ ଆଉ କେହି ଜଣେ ଅଛି, ସେମାନେ ତାହା ଜାଣି ନ ଥିଲେ । ଅଜା ଏକାଙ୍କଠାରୁ ଆଦର ପାଇ ସେମାନଙ୍କର

ଥିଉ ଆହ୍ଲାଦର ସୀମା ରହିଲା ନାହିଁ । ଖେଳ ଛଳନାରେ ରାମେଶ୍ୱର ବାବୁ ସେମାନଙ୍କୁ ହରେନ୍ଦ୍ରକୁମାରଙ୍କ ବିଷୟ ଜାଣିବା ନିମନ୍ତେ ଅନେକ କଥା ପଚାରିଲେ ।

କିନ୍ତୁ ସେମାନେ ନିତାନ୍ତ ବାଳକ, ତାହାଙ୍କର ବିଷୟରେ ସେମାନେ କିଛି ଜାଣନ୍ତି ନାହିଁ କି ବୁଝନ୍ତି ନାହିଁ; ବିଶେଷତଃ ସେମାନେ କିଛି ଉତ୍ତର ଦେଇ ପାରିଲେ ନାହିଁ ।

ବଡ଼ ନାତିଙ୍କର ନାମ ବାମାଚରଣ, ମଝିଅଁଙ୍କର ନାମ ଶ୍ୟାମାଚରଣ, ସାନଟିର ନାମକରଣ ହୋଇ ନାହିଁ ।

ରାମେଶ୍ୱର ବାବୁ ପଚାରିଲେ, "ବାମାଚରଣ, ତୁମ୍ଭର ବାପା ତୁମ୍ଭଙ୍କୁ ଭଲ ପାଆନ୍ତି ?"

ବାମାଚରଣ । ନା ଅଜା, ଦିନେ ମାଙ୍କର ଜ୍ୱର ହୋଇଥିଲା, ମା ଶୋଇ କାନ୍ଦୁଥିଲେ, ମୁଁ ବାପାଙ୍କୁ ଡାକିବା ପାଇଁ ଗଲି, ସେଥିପାଇଁ ବାପା ମୋ ଗାଲରେ ଗୋଟିଏ ଚାପୁଡ଼ା ମାରି ସେ ଘରୁ ମତେ ବାହାର କରି ଦେଲେ ।

ରାମେଶ୍ୱର । ତୁମ୍ଭର ବାପା ତୁମ୍ଭଙ୍କୁ କୋଳରେ ଧରନ୍ତି ?

ବାମାଚରଣ । ନା ।

ରାମେଶ୍ୱର । ନଣ୍ଡାକୁ କୋଳରେ ଧରନ୍ତି ?

ବାମାଚରଣ । ନା, କାହାରିକି ବି ଧରନ୍ତି ନାହିଁ ।

ରାମେଶ୍ୱର । ତୁମ୍ଭମାନଙ୍କର ସେହି ବଗୀ ଖଣ୍ଡିକ କଅଣ ହେଲା ?

ବାମାଚରଣ । ବାପା ବିକି ଦେଲେଣି ।

ରାମେଶ୍ୱର । ତୁମ୍ଭର ବାପା କଚେରୀକି ଯାଆନ୍ତି ?

ବାମାଚରଣ । ସେ କଥା ମୁଁ ଜାଣେ ନାହିଁ ।

ରାମେଶ୍ୱର । ତୁମ୍ଭର ବାପା ରାତିରେ କେଉଁ ଘରେ ଶୁଅନ୍ତି ?

ବାମାଚରଣ । ସବୁ ଦିନେ ବାପା ଘରକୁ ଆସନ୍ତି ନାହିଁ, ଦିନେ ଆସନ୍ତି, ରାତି ହେଲେ ସେ ବଡ଼ ପାଟି କରି କଅଣ କହନ୍ତି ।

ସୁମେଶ୍ୱର । କଅଣ କହି ପାଠି କରନ୍ତି ?

ବାମାଚରଣ । ମୁଁ ତାହା ବୁଝି ପାରେ ନାହିଁ ।

ସୁମେଶ୍ୱର । ତୁମ୍ଭ ଦାଣ୍ଡମେଲାଂକୁ ଲୋକ ଜଣ ଆସନ୍ତି କି ନାହିଁ ?

ବାମାଚରଣ । ଦିନରେ ଅମ୍ଭେମାନେ ଦୁଇ ଭାଇ ଖେଳୁଁ, ରାତି ହେଲେ କେତେ୨ ଲୋକ ଆସନ୍ତି, ସେମାନେ ନାଚନ୍ତି, ଗୀତ ଗାଆନ୍ତି, ପାଠି କରନ୍ତି, ଚୂଲି ଯାଆନ୍ତି ।

ସୁମେଶ୍ୱର । ତୁମ୍ଭର କେତେ ଖଣ୍ଡ ଲୁଗା ?

ବାମାଚରଣ । ମୋର ଏହି ଖଣ୍ଡିକ ଲୁଗା ।

ଏତେବେଳଯାଏ ଶ୍ୟାମାଚରଣ ପାଖରେ ବସି କଳର ପିତୁଳା ଘେନି ଖେଳୁଥିଲା, ସେ କହିଲା, "ମୋର ଖଣ୍ଡେ ଅଙ୍ଗା, ଲୁଗା ଅଛି ।"

ସୁମେଶ୍ୱର । ତୁମ୍ଭମାନଙ୍କର କି ଜୋତା ନାହିଁ ?

ବାମାଚରଣ । ନା, ଥିଲା, ସେ ଛିଣ୍ଡି ଗଲାଣି ।

ଶ୍ୟାମାଚରଣ । ଅଜ୍ଞା, ମୁଁ ଜୋତା ପିନ୍ଧିବ ।

ସୁମେଶ୍ୱର ବାବୁ ତାହାକୁ କୋଳରେ ଧରି ତାହାର ମୁଖ ଚୁମ୍ବନ କରି କହିଲେ, "ସେଥିପାଇଁ ଭାବନା କି ଆଉ ? ଜୋତା ଦେବି, ଜାମା ଦେବି ।"

ବାମାଚରଣ । ମୋତେ ?

ସୁମେଶ୍ୱର । ତୁମ୍ଭକୁ ବି ଦେବି, ତୁମ୍ଭମାନଙ୍କୁ କଲିକତା ଘେନି ଯିବି ।

ଶ୍ୟାମାଚରଣ । ଅଜ୍ଞା, ଡୋଲି ଗାଡ଼ିରେ ଯିବି ।

ସୁମେଶ୍ୱର । ଯିବ ନାହିଁ ଆଉ କଅଣ, ତୁମ୍ଭେମାନେ ଯିବ, ନଣ୍ଡା ବି ଯିବ, ତୁମ୍ଭମାନଙ୍କର ମାଆ ବି ଯିବ ।

ବାମାଚରଣ । ବାପା—?

ସୁମେଶ୍ୱର ବାବୁ ସେ କଥାକୁ କୌଣସି ଉତ୍ତର ନ ଦେଇ ଅଉ ଥରେ ପଚାରିଲେ, "ଭଲ, ତୁମ୍ଭେମାନେ କି ଜଳଖିଆ କର ?"

ବାମାଚରଣ । ମା ଭୁଜା ଦିଅନ୍ତି ।

ଶ୍ୟାମାଚରଣ । ମୁଁ ଉଖୁଡ଼ା ଖାଁବ ।

ରାମେଶ୍ୱର । କାହିଁକି ସନ୍ଦେଶ ଖାଅ ନାହିଁ ?

ବାମାଚରଣ । ମା ଦଅନ୍ତି ନାହିଁ ?

ଶ୍ୟାମାଚରଣ । ଅଚ୍ଛା, ମୁଁ ସନ୍ଦେଶ ଖାଇବି ।

ରାମେଶ୍ୱର । ସେଥିରେ ଭାବନା କି, କାଲି ମୁଁ ସନ୍ଦେଶ ଦେବି, ତୁମ୍ଭେମାନେ କି ଦୁଧ ଖାଅ ନା ?

ବାମାଚରଣ । ମା ଅମ୍ଭମାନଙ୍କୁ ଦଅନ୍ତି ନାହିଁ । କେବଳ ନଣ୍ଡାକୁ ଦଅନ୍ତି । ଅମ୍ଭମାନଙ୍କୁ ଅଉ ଗୋଟିଏ ଦ୍ରବ୍ୟ ଦଅନ୍ତି ।

ରାମେଶ୍ୱର । ଭଲ, ସେ କି ଦ୍ରବ୍ୟ ?

ବାମାଚରଣ । ଭାତ ରନ୍ଧା ସରିଲେ ସେହି ଯେ ଧୋବଳିଆ ତହିଁ ପାଣି ଲୁଣ ପକାଇ ଖାଇବାକୁ ଦଅନ୍ତି, ତୁମ୍ଭକୁ ବ ଦେବେ ।

ରାମେଶ୍ୱର ବାବୁ ଅଉ କିଛି କଥା କହିଲେ ନାହିଁ । ସେ କଥା ଶୁଣି ତାଙ୍କ ଆଖିରୁ ଲୁହ ଗଡ଼ିଲା । କ୍ଷଣକାଳ ଉତ୍ତାରେ ପିଲାମାନେ ଶୋଇ ପଡ଼ିଲେ ।

ହରଦାସୀଙ୍କ ଝଡ଼ ତୁଫାନ ବନ୍ଦୀ ହୋଇଅଛି, ବର୍ତ୍ତମାନ ତାହାଙ୍କ ହାତରେ କିଛି ପଇସା ଅଛି । ବଜାରରୁ ମାଛ ଓ ଅନ୍ୟାନ୍ୟ ପ୍ରକାର ପରିବା କିଣି ଆଣି ରନ୍ଧନ କଲେ । ଅନେକ ଦିନ ହେଲା ପିତାଙ୍କ ପାଖରେ ବସି ତାହାଙ୍କୁ ଭୋଜନ କରାଇ ନାହାନ୍ତି ; ଅନେକ ଦିନ ଉତ୍ତାରେ ଆଜି ସେ ସୁଯୋଗ ପାଇଅଛନ୍ତି ବୋଲି ମନରେ ବଡ଼ ଭାବ, ସେ କାଳର କେତେ ପୁରୁଣା କଥା ମନରେ ପଡ଼ିଲା । ପ୍ରଥମଠାରୁ ଶେଷ ପର୍ଯ୍ୟନ୍ତ ତାହାଙ୍କର ଜୀବନର ଘଟଣା ସମସ୍ତ ଗୋଟିକ ପରେ ଗୋଟିଏ ଚିନ୍ତା କରୁ ଦେଖିଲେ ଲୋକମାନେ ଜଗତରେ ଲାଭ କରିବା ନିମନ୍ତେ ଯାହା ବାସନା କରନ୍ତି, ସେହି ସମସ୍ତ ତାହାଙ୍କୁ ଭଗବାନ ଦେଇଥିଲେ । ମନ ଅନୁସାରେ ସ୍ୱାମୀ ପାଇଥିଲେ, ତାହାଙ୍କ ପ୍ରତି ସ୍ୱାମୀଙ୍କର ପ୍ରେମ ଥିଲା,

ତାହାଙ୍କର ମଧ୍ୟ ସ୍ୱାମୀଙ୍କ ପ୍ରତି ଅକଥନୀୟ ପ୍ରେମ ଓ ଭକ୍ତି ଥିଲା; ପୂର୍ବ-ପରି ତାଙ୍କର ଭକ୍ତି ଏବେ ମଧ୍ୟ ଅଛି । କିନ୍ତୁ ହାୟ, ସ୍ୱାମୀଙ୍କର ପ୍ରେମ ସେ ହଜାଇ ଦେଇଅଛନ୍ତି । ଯାହା ସେ ପାଇଥିଲେ, ତାହା ସେ କାହିଁକି ହଜାଇଲେ, କି ପାପ ସକାଶେ ତାହାର ଏପରି ଦୁର୍ଦ୍ଦଶା ଘଟିଲା? କାହିଁକି ଏପରି ହେଲା କିଏ କହିବ ?

ଖଡ଼ୁ ଦୁଇ ପଟ ବନ୍ଧା ହେବା ଦିନଠାରୁ ଟଙ୍କା କେତୋଟି ଆଦାୟ କରିବା ନିମନ୍ତେ ହରେନ୍ଦ୍ର ବାବୁ ହରଦାସୀ ଉପରେ ବଡ଼ ଅତ୍ୟାଚାର ଆରମ୍ଭ କରିଅଛନ୍ତି । ହରଦାସୀଙ୍କର ସ୍ୱାମୀଙ୍କୁ କିଛିହିଁ ଅଦେୟ ନ ଥିଲା । କିନ୍ତୁ ପିଲାମାନଙ୍କ ମୁଖର ଆହାର ବନ୍ଦ କରି ସ୍ୱାମୀଙ୍କୁ ମଦ ଖାଇବା ନିମନ୍ତେ ଟଙ୍କା ଦେବାକୁ ଅସ୍ୱୀକାର କରିବାରୁ ଗତ ରାତିରେ ହରେନ୍ଦ୍ର ବାବୁ ହରଦାସୀଙ୍କି ପ୍ରହାର କରିଅଛନ୍ତି; ଆଜି ପିତାଙ୍କ ସମ୍ମୁଖରେ ପଛେ କୌଣସି ପ୍ରକାରରେ ଲାଞ୍ଛନା ହୁଏ, ଏହି ଭୟରେ ତାଙ୍କର ହୃଦୟ କ୍ଷଣେ କ୍ଷଣେ କମ୍ପି ଉଠୁଅଛି; ହରଦାସୀ ଦେବତାମାନଙ୍କ ନିକଟରେ କାୟମନରେ ପ୍ରାର୍ଥନା କରୁଅଛନ୍ତି ।

"ହେ ହରେ ! ହେ ମଧୁସୂଦନ ! ଆଜ ତାହାଙ୍କୁ ଭଲ ମତିରେ ଘରକୁ ଘେନି ଆସି ମୋର ଲଜ୍ଜା ନିବାରଣ କର ।"

ରନ୍ଧନ କରୁ କରୁ ଅନେକ ରାତି ହେଲା । ପଥଶ୍ରାନ୍ତ ସକାଶେ ରମେଶ୍ୱର ବାବୁ ସେତେବେଳେ ଶୟନ କରିଥିଲେ । ହରଦାସୀ ଅନ୍ନ ବ୍ୟଞ୍ଜନ ବାଢ଼ି ଆଣି ଭୋଜନ କରାଇବା ନିମନ୍ତେ ଡାକି ବସାଇଲେ । ରମେଶ୍ୱର ବାବୁ ଭୋଜନ ଆସନରେ ବସି କହିଲେ, "ଏକା ଏକା ମୋ ପାଇଁ ଏତେ ରନ୍ଧ ଅଛି, ତେବେ କାହିଁ ମାଆ ମୋତେ ଗୋଟିଏ ପଦାର୍ଥ ଦେଇ ନାହିଁ ?"

ହରଦାସୀ । କଅଣ ବାପା ? ॰

ରମେଶ୍ୱର । ଦୁଧର ବଦଳରେ ଭାତ ହାଣ୍ଡିରୁ ଉହ ଉହ କରି ଡାଲି ଲୁଣ ପକେଇ ଯାହା ପିଲାମାନଙ୍କୁ ଖାଇବାକୁ ଦିଅ, ସେ ପେଜ କାହିଁ ?

ହରଦାସୀ କିଛି କଥା କହିଲେ ନାହିଁ ।

ରମେଶ୍ୱର । ମୁଁ କଲିକତାରେ ବସି ଦୁଧ, ଘିଅ ଓ ସନ୍ଦେଶ ଖାଉଛି, ଆଉ ତୁମ୍ଭର ପିଲାମାନେ ପେଟ ପିଇ ପେଟର ଜ୍ୱାଳା ନିଭାଉଛନ୍ତି ; ଏତେ କଷ୍ଟ ହେଲାଣି ; ତେବେ ସୁଦ୍ଧା ମୋତେ କାହିଁକି ଲେଖି ନାହଁ ?

ହରଦାସୀ ସେ କଥାର କୌଣସି ଉତ୍ତର ଦେଲେ ନାହିଁ, ରମେଶ୍ୱର ବାବୁ ପଚାରିଲେ କାହିଁକି ଏପରି ହେଲା ?

ଧୀରେ୨ ହରିଦାସୀ କହିବାକୁ ଲାଗିଲେ, ମଦ ସର୍ବନାଶ କଲାଣି, ସବୁ ସରିଲାଣି, ମୋର ଏହି ସୁନାର ବାଛା ଧନମାନଙ୍କୁ ଦୁଇ ବେଳା ଦୁଇ ମୁଠି ଭାତ ଖାଇବାକୁ ଦେଇ ପାରୁ ନାହିଁ । ତାହାର ପରେ ଆହୁରି ଅନେକ କଥା କହିଲେ । ରମେଶ୍ୱର ବାବୁ ସେମାନଙ୍କୁ କଲିକତା ନେଇ ଯିବା ପାଇଁ ଇଚ୍ଛା କଲେ । ଏହିପରି କଥାବାର୍ତ୍ତା ହେଉଅଛି, ଏମନ୍ତ ସମୟରେ ହରେନ୍ଦ୍ର ବାବୁ ଆସି ଡାକଲେ, "ହରଦାସୀ ।"

ହତଭାଗିନୀ ସ୍ୱର ଶୁଣି ବୁଝି ପାରିଲେ ଯେ, ଆଜି ମୋର କପାଳ ପୋଡିଲାଣି, ସ୍ୱାମୀ ଭଲମତରେ ଆସି ନାହାନ୍ତି । ହରଦାସୀ ଚଞ୍ଚଳ ହୋଇ ଉଠିଗଲେ, ସ୍ୱାମୀଙ୍କର ହାତ ଧରି କହିଲେ, ବାପା ଆସିଛନ୍ତି, ମୋର ମୁଣ୍ଡ ଖାଅ, ଆଜି ଆଉ ଗୋଲମାଲ କର ନାହିଁ ।

ସେ ଦିନ ହରେନ୍ଦ୍ର ବାବୁଙ୍କର ମଦ ପିପାସା ଦୂର ହୋଇ ନ ଥିଲା, ସ୍ତ୍ରୀଙ୍କର କଥା ତାହାଙ୍କର କାନକୁ ଗଲା ନାହିଁ ; ତାହାଙ୍କୁ ସେ ଦୁଇଟି ଟଙ୍କା ମାଗିଲା, ହରଦାସୀ ତାହା ଦେବାକୁ ଅସ୍ୱୀକାର କରିବାରୁ ନରାଧମ ତାହାଙ୍କୁ ଗାଳି ଦେଲା, ଅପମାନ କଲା, ଅବଶେଷରେ ନିଜ ହାତର ବାଡିରେ ତାହାଙ୍କୁ ପ୍ରହାର କଲା । ହରେନ୍ଦ୍ର ବାବୁଙ୍କ ମୁଖରୁ ଅଶୁଚି ଗାଳି ଶୁଣି ରମେଶ୍ୱର ବାବୁ ଭାତ ଥାଳୀ ଫୋପାଡି ଦେଇ ଠିଆ ହୋଇ, ଏ ଅବସ୍ଥାରେ କଅଣ କରିବା ଉଚିତ, ଏହା ଭାବୁଥିଲେ । ଏଥି ମଧ୍ୟରେ ହରଦାସୀ ମାଡ଼ ଖାଉଅଛି ଦେଖି ଆଉ ତାଙ୍କର ସହ୍ୟ ହେଲା ନାହିଁ,

ସେ ସେଠାକୁ ଯାଇ ହରେନ୍ଦ୍ର ହାତରୁ ବାଡ଼ ଛଡ଼ାଇ ନେଲେ, ଓ ଜୁଆଁ-ଇଙ୍କ ତିରସ୍କାର କଲେ ; ହରେନ୍ଦ୍ରଙ୍କର ତାହା ସହ୍ୟ ହେଲା ନାହିଁ । ସେ ମଧ୍ୟ ଶ୍ୱଶୁରଙ୍କୁ ଗାଳି ଦେବାକୁ ଲାଗିଲେ, ଓ ଜୁତାସହ ପଦାଘାତ କରିବା ପାଇଁ ନିଜ ପାଦ ଉଠାଇଲେ । ସେତେବେଳେ ହରେନ୍ଦ୍ର ମଦୁଆଳ, ଘୋର ମଦୁଆଳ ; ପାଦ ଉଠାଇବା ମାତ୍ରକେ ଭୂମିଶାୟୀ ହୋଇ ପଡ଼ିଗଲେ ।

ସେ ରାତି ସେହି ଅବସ୍ଥାରେ କଟିଗଲା । ହରେନ୍ଦ୍ର ଅଚେତନ ହୋଇ ପଡ଼ି ରହିଲେ । ଆଉ ହରିଦାସୀ ଓ ତାଙ୍କର ପିତାଙ୍କ ମନର ଅବସ୍ଥା କିପ୍ରକାର ହୋଇଥିଲା, ତାହା ଅନୁଭବ କରାଯାଇ ପାରେ, କିନ୍ତୁ ସେ ଘଟନା କହିବାପାଇଁ ଏ ଭାଷାରେ ସେପରି କଥା ନାହିଁ । ପରଦିନ ସକାଳେ ସମସ୍ତେ ଉଠିବା ଆଗରୁ ହରେନ୍ଦ୍ର ଉଠି ପ୍ରସ୍ଥାନ କରିଅଛନ୍ତି। ରାମେଶ୍ୱର ବାବୁ ତିନି ଦିନ କନ୍ୟାର ବସାରେ ରହିଲେ, ସେ ତିନି ଦିନ ମଧ୍ୟରେ ହରେନ୍ଦ୍ର ଆଉ ବସାକୁ ଅସିଲେ ନାହିଁ । ରାମେଶ୍ୱର ବାବୁ ହରଦାସୀଙ୍କ କଲିକତା ନେଇ ଯିବାପାଇଁ ଅନେକ ବୁଝାଇଲେ, ଅନେକ ଚେଷ୍ଟା କଲେ, କିନ୍ତୁ ହରିଦାସୀ କଲିକତା ଯିବାପାଇଁ କୌଣସି ପ୍ରକାରେ ସ୍ୱୀକୃତା ହେଲେ ନାହିଁ । ତେବେ ରାମେଶ୍ୱର ବାବୁ କନ୍ୟା ଉପରେ ରାଗ କରି ଚତୁର୍ଥ ଦିନରେ କଲିକତାକୁ ବାହୁଡ଼ି ଗଲେ । ହରିଦାସୀଙ୍କ ଚକ୍ଷୁରୁ ଜଳ ପଡ଼ିଲା । ନାତି ଦୁଇଟି ଅଜା ସଙ୍ଗରେ ଯାଇ ନ ପାରିବାରୁ କାନ୍ଦିବାକୁ ଲାଗିଲେ । ଅଜା ଯେତେକ୍ଷଣ ପର୍ଯ୍ୟନ୍ତ ସେମାନଙ୍କର ଦୃଷ୍ଟିରୁ ଅନ୍ତର ନ ହେଲେ, ସେତେକ୍ଷଣ ପର୍ଯ୍ୟନ୍ତ ସେମାନେ ଏକ ଦୃଷ୍ଟିରେ ସେହି ପଥ ଆଡ଼କୁ ଚାହିଁ ରହିଲେ । ତାର ପରେ ଦୀର୍ଘ ନିଶ୍ୱାସ ପକାଇ ନିରାଶମନରେ ଘର ଭିତରକୁ ବାହୁଡ଼ି ଗଲେ । ସେ ଦିନ ଆଉ ସେମାନଙ୍କୁ ଖେଳ ଭଲ ଲାଗିଲା ନାହିଁ । ଯେମନ୍ତ ସେମାନଙ୍କର କେହି ନିଜର ଜଣେ ଦୁଇ ଦିନପାଇଁ ସେମାନଙ୍କୁ ସ୍ନେହ କରିବାକୁ ଅସିଥିଲେ, ଆଜି ଚାଲି ଯାଇଅଛନ୍ତି । କେଜାଣି ଯଦି ସେ ଆଉ ଥରେ ଫେରି ଆସନ୍ତି, ଏହା ଭାବି ଦୁଇଟି ଭାଇ ଥରକୁ-

ଥର ଦାଣ୍ଡରେ ଆସି ଠିଆ ହୁଅନ୍ତି, ଅଜା ଯେ ଆଡ଼କୁ ଯାଉଅଛନ୍ତି ସେହି ଦିଗକୁ ଚାହିଁ ଥାନ୍ତି, କିନ୍ତୁ ଆଉ ତାହାଙ୍କୁ ଦେଖି ପାରିଲେ ନାହିଁ ।

---

ପଞ୍ଚମ ଅଧ୍ୟାୟ

ଘରବାଲା ଉଠିଯିବା ନିମନ୍ତେ ହରେନ୍ଦ୍ର ବାବୁଙ୍କୁ ଯେ ନୋଟିସ ଦେଇଥିଲା ତାହାର ମିଆଦ ପ୍ରାୟ ଶେଷ ହୋଇଗଲା । ଭଦ୍ର ସମାଜରେ ମୁଖ ଦେଖାଇବାକୁ ହରଦାସୀଙ୍କର ଇଚ୍ଛା ନ ଥିଲା । ସେଥିପାଇଁ ଗ୍ରାମ ମୁଣ୍ଡର ଚଷାପଡ଼ାରେ ବଣ ଜଙ୍ଗଲ ଭିତରେ ଅଳ୍ପ ଭଡ଼ାରେ ଗୋଟିଏ ସାନ ଘର ଭଡ଼ା ନେଇ ସେହି ସ୍ଥାନକୁ ଉଠିଗଲେ । ଯେ ଘରେ ଏତେ ଦିନ ରହି ଆସିଅଛନ୍ତି, ଯେଉଁଠାରେ ସେମାନଙ୍କର ସୁଖର ଉଦୟ ଓ ଅସ୍ତ ହୋଇଅଛି, ଯେ ଘରେ ତାଙ୍କର ଛଅଟି ପୁଏ ସନ୍ତାନ ଜନ୍ମ ଗ୍ରହଣ କରିଅଛନ୍ତି, ଯେ ସ୍ଥାନରେ ତାହାଙ୍କର ଜୀବନର ଅତି ଗୋପନୀୟ କଥା, କେତେ ଭାବ, କେତେ ଚିନ୍ତା ଲୁକ୍କାୟିତ ଭାବରେ ରହିଅଛି ; ସେ ସ୍ଥାନ ସୁଖ ଦୁଃଖର ହେଲେହେଁ ମନୁଷ୍ୟର ପ୍ରାଣ ଥାଉଁ ୨ ସହଜରେ ଏପରି ସ୍ଥାନ ଛାଡ଼ିବାକୁ ଇଚ୍ଛା କରେ ନାହିଁ । କିନ୍ତୁ ହରଦାସୀକୁ ବାଧ୍ୟ ହୋଇ ସେ ସ୍ଥାନ ଛାଡ଼ିବାକୁ ହେଲା । ଅଳ୍ପ ଦିନ ହେଲା ହରଦାସୀ ନୂତନ ବସାକୁ ଆସିଅଛନ୍ତି, ସୁଖର ମଧ୍ୟରେ ଏହି ଯେ, ଏପଡ଼ାର ଲୋକମାନେ ତାହାଙ୍କୁ କେହି ଚିହ୍ନନ୍ତି ନାହିଁ। ତାହାଙ୍କର ଅବସ୍ଥା ପୂର୍ବରେ କିପରି ଥିଲା, ଏବେ କଅଣ ହୋଇଅଛି ତାହା ସ୍ତ୍ରୀ ଲୋକମାନଙ୍କ ମଧ୍ୟରେ କେହି କିଛି ଜାଣନ୍ତି ନାହିଁ । ସେଥିପାଇଁ ପ୍ରତିବାସୀମାନଙ୍କ ସଙ୍ଗରେ ମୁଖ ଟେକି କଥା କହିବାକୁ ହରଦାସୀଙ୍କର ଆଉ ଲଜ୍ଜା ବୋଧ ହୁଏ ନାହିଁ । ଏ ଗ୍ରାମକୁ ଆସିବା ଦିନରୁ ଯେମନ୍ତ ହରଦାସୀ ଟିକିଏ ନିଶ୍ୱାସ ମାରୁଅଛନ୍ତି। ତାହାଙ୍କର ଗୁଣ ସକାଶୁ ଏହି କେତେକ ଦିନ ଭିତରେ ଗ୍ରାମର ସ୍ତ୍ରୀଲୋକମାନେ ତାହାଙ୍କୁ ଭଲ ପାଇବାକୁ ଓ ମାନ୍ୟ କରିବାକୁ ଆରମ୍ଭ କରିଅଛନ୍ତି ।

ଗ୍ରମେଣ୍ଟର ବାବୁ କଳକତାକୁ ଫେର ଅସିବା ଦନରୁ ହରଦାସୀଙ୍କ କୌଣସି ପତ୍ର ଲେଖନ୍ତ ନାହିଁ। ହରଦାସୀ ବୁଝିଅଛନ୍ତ ଯେ ତାହାଙ୍କ ଉପରେ ପିତାଙ୍କର ରାଗ ତୃଣା ପଡ଼ି ନାହିଁ । ହରଦାସୀ ତୁରଦନ ହେଲା ପିତାଙ୍କୁ ପତ୍ର ଲେଖିବା ନମନ୍ତେ କାଗଜ କଲମ ଘେନ ବସିଥିଲେ, କନ୍ତୁ ପ୍ରଥମ ଦନରେ କଅଣ ଲେଖିବେ ସ୍ଥିର କର ପାରଲେ ନାହିଁ, ଯଦ୍ୟପି ଦ୍ୱିତୀୟ ଦନରେ ଭାବ ଚନ୍ତ ବଷୟ ସ୍ଥିର କଲେ, କନ୍ତୁ ମନର ଭାବ ପ୍ରକାଶ କର ଲେଖିବା ନମନ୍ତେ ଉପଯୁକ୍ତ କୌଣସି କଥା ମନରେ ଅସିଲା ନାହିଁ । ଥରେ ଖଣ୍ଡେ ପତ୍ର କେତେକ ଦୂର ଲେଖି ମନ ଅନୁସାରେ ନ ହେବାରୁ ଚର ଫୋପାଡ ଦେଲେ । ତାର ପରଦନଠାରୁ ଆଉ ଚଠି ଲେଖିବା ନମନ୍ତେ ଇଚ୍ଛା କରନ୍ତ ନାହିଁ । ଅଜ ପିତାଙ୍କ ନକଟରୁ ଖଣ୍ଡେ ପତ୍ର ଅସି-ଅଛୁ । ହରଦାସୀ ଭୟ କରୁ କରୁ ପତ୍ର ଫିଟାଇ ପଢିବାକୁ ଲାଗିଲେ ।

"ହରଦାସୀ, ମୁଁ ତୁମ୍ଭଙ୍କୁ ଘେନ ଅସିବା ନମନ୍ତେ ବଶେଷ ଚେଷ୍ଟା କରଥିଲ, କନ୍ତୁ ତୁମ୍ଭେ ଅସିବାକୁ ଅସ୍ୱୀକାର କଲ ; କାହିଁକ ଯେ ଅସ୍ୱୀ-କାର କଲ ତାହା ତୁମ୍ଭେ ନଜେ ଜାଣ । ତୁମ୍ଭର ସ୍ୱାମୀ ଜଣେ ନଷ୍ଠୁର-ହୃଦୟ ନର-ପଶୁ, ମଦ ଖାଇ ସବୁବେଳେ ଉନ୍ମତ୍ତ ହୋଇଥାଏ ; ତାହାର ହିତାହିତ ଜ୍ଞାନ ନାହିଁ, କର୍ତ୍ତବ୍ୟାକର୍ତ୍ତବ୍ୟ ବୋଧ ନାହିଁ ; ମୋହର ନକଟରେ ରହିବାଠାରୁ ଯଦ ସେହି ମଡୁଅଲ ପାଷଣ୍ଡ ନକଟରେ ରହ ତୁମ୍ଭେ ସୁଖୀ ହୁଅ, ସେଥିରେ ମୋହର କଛୁ ଆପତ୍ତି ନାହିଁ ବା କହିବାର ନାହିଁ ; କନ୍ତୁ ତୁମ୍ଭେ ମୋର ଏକମାତ୍ର କନ୍ୟା, ମୁଁ ଅଜୀବନ ପରଶ୍ରମ କର ଯାହା କଛୁ ସଞ୍ଚୟ କରଅଛି, ମନେ କରଥିଲ ଯେ ତାହା ତୁମ୍ଭଙ୍କୁ ଦାନ କର ଯିବ । କନ୍ତୁ ତୁମ୍ଭେ ମୋହର କଥା ଶୁଣିଲ ନାହିଁ । ଯଦ ମୋହର ଫେର ଅସିବା ଉତ୍ତାରେ ତୁମ୍ଭର ମନପରବର୍ତ୍ତନ ହୋଇଥାଏ, ତେବେ ଲେଖି ଜଣାଅ, ମୁଁ ଲୋକ ପଠାଇ ତୁମ୍ଭଙ୍କୁ ଘେନ ଅସିବ । ତା ନ ହେଲେ ମୋହର ଏହି ଶେଷ ପତ୍ର ଜାଣିବ । ଆଉ କେବେ ମୁଁ ତୁମ୍ଭର ନାମ ମୁଖରେ ଅଣିବ

ନାହିଁ, ଏବଂ ତୁମ୍ଭେ ମଧ୍ୟ ମୋହର ଧନରେ କୌଣସି ପ୍ରତ୍ୟାଶା ରଖିବ ନାହିଁ । ଇତି ।
ଶ୍ରୀ ରାମେଶ୍ୱର ଶର୍ମ୍ମା ।"

ହରିଦାସୀ ପତ୍ର ପାଠ କଲାଉତ୍ତାରେ ଉତ୍ତର ଲେଖିଲେ, ଯେ,

"ଶ୍ରୀ ଚରଣ କମଳେଷୁ—

ବାପା,

ଯାହାଙ୍କ ହସ୍ତରେ ଆପଣ ମୋତେ ସମର୍ପଣ କରିଅଛନ୍ତି, ସେ ମନ୍ଦ ଅଳ ହେଲେହେଁ ମୋର ସ୍ୱାମୀ, ପାଷଣ୍ଡ ହେଲେହେଁ ମୋର ଦେବତା, ମୁଁ ତାହାଙ୍କୁ କେବେହେଁ ପରିତ୍ୟାଗ କରି ପାରିବ ନାହିଁ । ମୁଁ ବୁଦ୍ଧି କମ୍ବା ନ ବୁଝି ଯଦି ଆପଣଙ୍କ ଚରଣରେ କୌଣସି ଅପରାଧ କରିଥାଏଁ, ତେବେ ଆପଣ ମୋତେ କ୍ଷମା କରିବେ । ବିଧାତା ମୋହର ପ୍ରତି ବିମୁଖ ହୋଇ-ଅଛନ୍ତି, ଆପଣ ମୋତେ ପାଦରେ ଫୋପାଡି ଦେବେ ନାହିଁ, ମୋହର ଅପରାଧ ସକାଶେ ମୋର ଛଜୋଟି ପିଲାଙ୍କୁ ପରିତ୍ୟାଗ କରିବେ ନାହିଁ ।
ଆପଣଙ୍କର ହତଭାଗିନୀ କନ୍ୟା—ହରିଦାସୀ ।"

ପତ୍ର ପାଇ ରାମେଶ୍ୱର ବାବୁ ଅନେକ ଦିନ ପର୍ଯ୍ୟନ୍ତ ଚିନ୍ତା କଲେ, ଭାବି୨ ଅବଶେଷରେ ଖଣ୍ଡେ ଉଇଲ୍ ପ୍ରସ୍ତୁତ କରି ରେଜିଷ୍ଟରୀ କରିତଃ ରଖିଦେଲେ ।

ଅନେକ ଦିନଉତ୍ତାରେ ହରେନ୍ଦ୍ର ବାବୁ ଆଜ କଟକ ଯାଇଅଛନ୍ତି; ସ୍ୱାମୀଙ୍କର କୌଣସି ଦିନ କଟକ ଯିବାର ଦେଖିଲେ ହରିଦାସୀ ମନ ଆନନ୍ଦ ଓ ଅହ୍ଲାଦରେ ପରିପୂର୍ଣ୍ଣ ହୁଏ । କେଜାଣି ସ୍ୱାମୀ ଦିନଯୋଗା ପରିଶ୍ରମ କରି ଆସୁଥିବେ, ତେଣୁ ତାହାଙ୍କ ପାଇଁ ଜଳଖିଆ ପ୍ରସ୍ତୁତ କରି ରଖିଲେ । ବେଳ ପ୍ରାୟ ଗଡ ଗଲାଣି, ଆକାଶ ମେଘରେ ଘୋଟି ରହି-ଅଛି । ଏହିକ୍ଷଣି ଯେଉଁଠାରେ ବସା କରିଅଛନ୍ତି ସେଠାରୁ କଟକ ବହୁତ ଦୂର ଅଟେ । ବର୍ଷା ଆସିଲେ ସ୍ୱାମୀଙ୍କର ଘରେ ପହୁଞ୍ଚିବାକୁ କଷ୍ଟ ହେବ, ଏହା ଭାବି ହରିଦାସୀ କେତେବେଳେ୨ ଆକାଶକୁ, କେତେବେଳେ୨

ଦାଣ୍ତ ଅଡ଼କୁ ଚାହୁଁଅଛନ୍ତି, ଏମନ୍ତ ସମୟରେ ହରେନ୍ଦ୍ର ବାବୁ ଘରକୁ ଫେରି ଆସିଲେ ; ତାହାଙ୍କ ପଛେ ୨ ଝଡ଼ ବୃଷ୍ଟି ଆସି ଉପସ୍ଥିତ ହେଲା ।

ଦାସୀ ସେଦିନ ଆସି ନ ଥିଲା । ହରଦାସୀ ତର ୨ ହୋଇ ବାବୁଙ୍କୁ କଚେରି ଲୁଗା ପାଲଟିବା ନିମନ୍ତେ ଲୁଗା ଦେଇ ମୁଖ ହାତ ଧୋଇବା ପାଇଁ ପାଣି ଅଣି ଦେଲେ, ଏବଂ ମୁହଁ ଧୋଇ ସାରିଲା ଉତ୍ତାରେ ହରଦାସୀ ପଚାରିଲେ, "ଆଜି କଚେରୀରେ କ କୌଣସି କାର୍ଯ୍ୟ ଥିଲା ?" କାର୍ଯ୍ୟ ଥିଲା ଶୁଣିଲେ ହରଦାସୀଙ୍କର ପ୍ରାଣରେ ଟିକଏ ସୁଖ ବୋଧ ହୁଏ, କିନ୍ତୁ ତାର ଭାଗ୍ୟରେ ସେ କଥା ଶୁଣିବା ଘଟି ଉଠିଲା ନାହିଁ । ବାବୁ କର୍କଶ ସ୍ୱରରେ ଉତ୍ତର ଦେଲେ, "ନା, କଚେରୀରେ କାମ ନ ଥିଲା, ଅମ୍ଭେ ସେଠାକୁ ଖେଳିବାପାଇଁ ଯାଇଥିଲୁଁ" ।

ହରଦାସୀ ମୁଖ ତଳକୁ କଲେ, ଏବଂ ଅନ୍ୟ ଘରୁ ଜଳଖିଆ ଅଣି ସ୍ୱାମୀଙ୍କୁ ଦେଲେ । ତାରପରେ ବାବୁ ନୀରବ ରହି, ଜଳଖିଆ ସାରି ଛତା ଧରି ବାହାରିବାକୁ ଉଦ୍ୟୋଗ କରୁଅଛନ୍ତି ଦେଖି ହରଦାସୀ କହିଲେ, "ଘଡଘଡି ମାରୁଛି, ବଡ ବର୍ଷା ହେଉଛି, ଆଜି ବସାରେ ରହିଲେ କ ହୁଅନ୍ତା ନାହିଁ ?"

ହରେ । ଅମ୍ଭର ନିମନ୍ତ୍ରଣ ଅଛି ।

ହରି । ବୋଧ ହୁଏ ରାତିକ ନିମନ୍ତ୍ରଣ, ବର୍ଷା ବନ୍ଦ ହେଉ, ତାରପରେ ନ ହୁଏ ଯିବ ।

ହରେ । ସେତେବେଳ ଯାଏ ଏକା ବସାରେ ବସି କଅଣ କରିବ,

ହରି । ଘଡ଼ଘଡି ଚଡଚଡି ମାଇଲେ ମୋତେ ବଡ ଭୟ ଲାଗେ, ସେ କଥାତ ତୁମ୍ଭେ ଜାଣ, ଆଜି ଦାସୀ ଅସି ନାହିଁ, ଏକା ଏ ଛୋଟି ପିଲାଙ୍କୁ ଘେନ ରହିବାକୁ ମୋର ବଡ ଭୟ ହେବ, ତୁମ୍ଭେ ଟିକଏ ଅଜ ମୋ ପାଖରେ ବସ ନା ?

ହରେ । ତୋର ମୁଣ୍ଡରେ ଅଜ ଯଦି ବଜ୍ରପାତ ହୁଏ, ଅମ୍ଭେ ପାଖରେ

ଥିଲେ କି ତୋତେ ରକ୍ଷା କରି ପାରନ୍ତି, ନା ତୋ ସଙ୍ଗରେ ଆମ୍ଭର ମରଣ ହେଲେ କିଛି ସୁଖ ହେବ ?

ହରି । ମୁଁ ମରେଁ, ମୋ ମୁଣ୍ଡରେ ବଜ୍ର ପଡ଼ୁ, କିନ୍ତୁ ତାହା ଯେମନ୍ତ ନ ଘଟେ ।

ହରେ । ଯଦି ତାହା ନ ଘଟିଲା, ବିଷ ଖା, ନ ହେଲେ ଗଳାରେ ଦଉଡ଼ି ଦେ, ମରଣ ତ ମନୁଷ୍ୟ ହାତରେ ଅଛି ।

ହରି । ମୁଁ ମଲେ ମୋ ପିଲାମାନଙ୍କ ଦଶା କଅଣ ହେବ? ସେମାନଙ୍କୁ ତୁମ୍ଭେ ଦେଖିବ କି ?

"ତୁ ଆଗ ମର, ତାର ପରେ ତୋର ପିଲାମାନଙ୍କର ବ୍ୟବସ୍ଥା ଯାହା ହୁଏ କରାଯିବ," ଏହି କଥା କହି ହରେନ୍ଦ୍ରବାବୁ ବସାରୁ ବାହାରି ଚାଲିଗଲେ।

ଏହିକ୍ଷଣି ସନ୍ଧ୍ୟା ହେଲାଣି, ପବନ ଦେବତା ବଡ଼ ବଡ଼ ଗଛମାନଙ୍କର ଡାଳ ଭାଙ୍ଗି ଫୁଲ ଫଳ ଛିଣ୍ଡାଇ ଏକାକାର କରିଅଛନ୍ତି; ଆକାଶରେ ବିଜୁଳୀ ଖେଳୁଅଛି, ଘନ ଘନ ମେଘ ଡାକୁଅଛି, ମୂଷଳଧାରରେ ମେଘ ବର୍ଷୁଛି; ଏମନ୍ତ କାଳରେ ନିଷ୍ଠୁରହୃଦୟ ହରେନ୍ଦ୍ର ବାବୁ ହରିଦାସୀଙ୍କ ଏକାକିନୀ ଛାଡ଼ି କେଉଁ ଆଡକୁ ଚାଲିଗଲେ ।

ହରିଦାସୀ ପିଲା ଦୁଇଜଣଙ୍କୁ ଖୁଆଇ ଶେଯରେ ଶୁଆଇ ଦେଲେ; ଏମନ୍ତ ସମୟରେ ଜଣେ ଦାଣ୍ଡ ଦୁଆରେ ଆସି ଡାକିଲା ।

"ବସାରେ କିଏ ଅଛନ୍ତି ହୋ, ଖଣ୍ଡେ ଚିଠି ଆସିଛି ।" ବସାରେ ଆଉ କେହି ନ ଥିଲେ, ହରିଦାସୀ ନିଜେ ଯାଇ ପତ୍ରଟି ଆଣିଲେ । ଡାକ ହରକରା କହିଗଲା ବାପ ଘାଣି ଷକାଶେ ଚିଠି ଦେବାକୁ ବଲମ୍ବ ହୋଇଅଛି ।

ଘରର ଗୋଟିଏ କୋଣରେ ଦୀପ ଜଳୁଥିଲା, ହରିଦାସୀ ସେହି ଦୀପ ଆଲୁଅରେ ପତ୍ର ପଢି "ମାଗୋ ବାପା" କହି ଚିତ୍କାର କରି ମୂର୍ଚ୍ଛା ଯାଇ ଭୂଇଁରେ ପଡ଼ିଗଲେ ।

ରାତ୍ର ଅନେକ ହେଲଣି, ବାଆ ପାଣି ବନ୍ଦ ହୋଇଅଛି, କିନ୍ତୁ ଆକାଶ ଏ ଅବଧି ମେଘାଚ୍ଛନ୍ନ ; ବାବୁ ଘରକୁ ଫେରି ଆସିଲେ । ମାଲତୀ ଅନ୍ତ-ବରୁ ଦୀପ ନିବ ଯାଇଅଛି, ହରିଦାସୀ ଏପର୍ଯ୍ୟନ୍ତ ସେହି ଏକ ଅବସ୍ଥାରେ ମୋହ ହୋଇ ପଡ଼ିଅଛନ୍ତି ; ତାହାର ମୃତପ୍ରାୟ ଦେହରେ ଜୀବନ-ପ୍ରଦୀପ ମିଟି୨ ହୋଇ ଜଳୁଅଛି । ଘରେ ଆଲୁଅ ନାହିଁ ଦେଖି ବାବୁଙ୍କର ବଡ ରାଗ ହେଲା, ହରିଦାସୀର ନାମ ଧରି ଡାକଲେ, ଅବଶେଷରେ ଘରେ ପ୍ରବେଶ କରିବାରୁ ତାହାଙ୍କ ପାଦରେ କଅଣ ଗୋଟାଏ ଲାଗିଲା, ହାତରେ ଛୁଇଁ ବୁଝିଲେ ଯେ, ସେ ଗୋଟିଏ ମନୁଷ୍ୟ ଶରୀର ।

ସେତେବେଳେ ସେହି ଅନ୍ଧକାରରେ ଦିଆସିଲାଇ ଖୋଜି ବାବୁ ଦୀପ ଜାଳି ଦେଖିଲେ ଯେ ହରିଦାସୀ ଅଜ୍ଞାନ ହୋଇ ପଡ଼ିଅଛି ; ତାହାର ହାତରେ ଝଣ୍ଡେ ଭାଷା । ବାବୁ ପତ୍ର ପାଠ କରି ଜାଣିଲେ ଯେ, ହଠାତ୍ ରାମେଶ୍ୱର ବାବୁଙ୍କର ମୃତ୍ୟୁ ଘଟିଅଛି ।

କିଛି କାଳପରେ ହରେନ୍ଦ୍ର ବାବୁଙ୍କର ଚେଷ୍ଟାରେ ଚେତନା ହେଲା ; ହରିଦାସୀ ଚେତନା ପାଇ ଶୋକାକୁଳା ହେଲେ । ହରେନ୍ଦ୍ର ଶୀଘ୍ର ଜଳ ଆଣି ମୁଖରେ ଦେବାରୁ ହରିଦାସୀଙ୍କର ଜ୍ଞାନ ହେଲା । ସେ ଚକ୍ଷୁ ମେଲି ଦେଖିଲେ ଯେ, ବାବୁ ନିକଟରେ ବସି ତାହାଙ୍କର ଶୁଶ୍ରୂଷା କରୁଅଛନ୍ତି ।

ହରିଦାସୀ ପୁଣି କାନ୍ଦି ଉଠିଲେ, "ବାପା, ତୁମ୍ଭେ କେଉଁଠାକୁ ଗଲ ।"

ହରେନ୍ଦ୍ର ସ୍ତ୍ରୀର ମସ୍ତକ ନିଜ କୋଳକୁ ଉଠାଇ ନେଇ ଧୀରେ୨ କହିଲେ, "ହରିଦାସୀ, ମୁଁ ତୁମ୍ଭକୁ ଅନେକ କଷ୍ଟ ଦେଇଅଛି, ତୁମ୍ଭ ଉପରେ ଅନେକ ଅତ୍ୟାଚାର କରିଅଛି, ମୁଁ ଅତି ନରାଧମ, ତୁମ୍ଭର ସ୍ୱାମୀ ହେବାପାଇଁ ଅଯୋଗ୍ୟ, ମୋତେ କ୍ଷମା କର ।"

ହରିଦାସୀ ଦୁଇ ବାହୁରେ ସ୍ୱାମୀଙ୍କର ଗଳା ବେଷ୍ଟନ କରି ତାହାଙ୍କର ବକ୍ଷରେ ମୁଖ ଲୁଚାଇ ଅନେକ କ୍ଷଣ ରୋଦନ କଲେ । ହରେନ୍ଦ୍ର ବାବୁ ହରିଦାସୀର ସେବା କରୁ୨ ରାତ୍ର ପାହିଗଲା ।

ପରଦିନ ହରିଦାସୀ ପିତାଙ୍କର ଶ୍ରାଦ୍ଧ କଲେ । ସେହି ଦିନ ହରେନ୍ଦ୍ର ବାବୁଙ୍କ ନାମରେ ଅଉ ଖଣ୍ଡେ ପତ୍ର ଅସିଲା ; ହରିଦାସୀଙ୍କି ସେମାନ ଅବିଳମ୍ବରେ କଲିକତା ଯିବା ଆବଶ୍ୟକ । ହରେନ୍ଦ୍ର ବାବୁ କୌଣସି ବନ୍ଧୁ ନିକଟରୁ ଟଙ୍କା କର୍ଜ କରି ସପରିବାରରେ କଲିକତାକୁ ଯାତ୍ରା କଲେ ।

---

## ଷଷ୍ଠ ଅଧ୍ୟାୟ

ମଫସଲଠାରୁ କଲିକତାରେ ଅଧଃପତନର ପଥ ଅତି ପ୍ରଶସ୍ତ : ପ୍ରଲୋଭନର ସାମଗ୍ରୀ ଏଠାରେ ଅନେକ ବେଶି । କେତେକ ମାସ ହରେନ୍ଦ୍ର ବାବୁ ଉତ୍ତମ ବ୍ୟବହାର କରିଥିଲେ ; ତାର ପରେ ପୁଣି ମଦ ପାନ କରିବାକୁ ଆରମ୍ଭ କଲେ, ବେଶ୍ୟାସକ୍ତ ହେଲେ । ଏକ ବର୍ଷ ଉତ୍ତାରେ ଶୁଣାଗଲା ଯେ, ରମେଶର ବାବୁ ଯେତେ ନଗଦ ଟଙ୍କା ରଖି ଯାଇଥିଲେ ତାହା ସମସ୍ତ ଖରଚ ହୋଇଯାଇଅଛି, ପୁଣି କରଜ କରିବାକୁ ହୋଇଅଛି, ଦୁଇ ତିନ ଜଣ ମହାଜନ ହରେନ୍ଦ୍ର ବାବୁଙ୍କ ନାମରେ ନାଲିସ୍ କରିଅଛନ୍ତି ।

ହରେନ୍ଦ୍ର ବାବୁ କଲିକତାକୁ ଆସି ଯେ କେତୋଟି ମାସ ଭଲ ଥିଲେ, ସେହି କେତୋଟି ମାସ ମଧ୍ୟରେ ହରିଦାସୀଙ୍କ ନିମନ୍ତେ ସାତ ଆଠ ଶ ଟଙ୍କାରେ ଗହଣା ଗଢ଼ାଇଥିଲେ, କିନ୍ତୁ ହରିଦାସୀ ସେ ଅଳଙ୍କାର ଦିନକ ପାଇଁ ମଧ୍ୟ ପିନ୍ଧି ନାହାନ୍ତି ।

ହରିଦାସୀଙ୍କର ବୟସ ବ ୧୪ ବର୍ଷ ମାତ୍ର ; ଏହି ଅଳ୍ପ ବୟସ ମଧ୍ୟରେ ତାଙ୍କର ସୁଖର ଚରମ ଦଶା ଦୁଃଖର ଶେଷ ଅବସ୍ଥାରେ ପରିଣତ ହୋଇଅଛି । ତାହାଙ୍କର ଜୀବନରେ ଅଉ ସରାଗ ନାହିଁ, ଅହ୍ଲାଦ ନାହିଁ, ସଂସାରରେ ରହିବା ପାଇଁ ଅଉ ଇଚ୍ଛା ନାହିଁ ପୁଣି ବଞ୍ଚିବାକୁହିଁ ଇଚ୍ଛା ନାହିଁ । ଅନେକ ଦିନରୁ ହରିଦାସୀ ଭାବୁଅଛନ୍ତି ଅତ୍ମହତ୍ୟା କରିବେ, କେବଳ ପିଲା ତିନୋଟିଙ୍କ ସକାଶେ ପାରୁ ନାହାନ୍ତି ।

ଦିନେ ବାବୁ ଆସି ତାହାଙ୍କର ଅନେକ ଟଙ୍କାର ଅଭାବ ହୋଇଅଛି ବୋଲି କହି ହରଦାସୀଙ୍କ ନିକଟରେ ହଜାର ଟଙ୍କାର ଖଣ୍ଡେ କୋମ୍ପାନି କାଗଜ ମାଗିଲେ ।

ହରଦାସୀ ତାହା ଦେବାକୁ ଅସ୍ୱୀକାର କଲେ ନାହିଁ । ସେହି ଖଣ୍ଡରେ ତାଙ୍କର ଅଳଙ୍କାର ବାକ୍ସ ଶେଷ ହେଲା । ଏହି ଘଟନାର ତିନିଦିନ ଉତ୍ତାରେ ହରଦାସୀ ଶୁଣିଲେ ଯେ, ଜଣେ ଡିଗ୍ରୀଜାରୀ କରି ହରେନ୍ଦ୍ର ବାବୁଙ୍କୁ ଦେୱାନୀ ଫାଟକରେ ଦେଇଅଛି । ହରଦାସୀ ଅତ୍ୟନ୍ତ ବ୍ୟସ୍ତ ହେଲେ, ସ୍ୱାମୀଙ୍କି ଦେୱାନୀ ଫାଟକରୁ ମୁକ୍ତ କରିବାପାଇଁ ଟଙ୍କା ପଠାଇ ଦେଲେ । ହରେନ୍ଦ୍ର ବାବୁ ଫାଟକରୁ ବାହାରି ଆସି ଆଉ ସ୍ତ୍ରୀ ସଙ୍ଗରେ ଦେଖା କଲେ ନାହିଁ; କିନ୍ତୁ ଏକାବେଳକେ ବେଶ୍ୟା ଘରେ ଯାଇ ଉପସ୍ଥିତ ହେଲେ ।

ହରେନ୍ଦ୍ର ବାବୁଙ୍କ ନିକଟରେ ଆଉ କିଛି ଅର୍ଥ ନାହିଁ, କିନ୍ତୁ ତାହାଙ୍କ ଭାର୍ଯ୍ୟା ହାତରେ ଯଥେଷ୍ଟ ଅର୍ଥ ଅଛି ଶୁଣି, ଯେମନ୍ତ କୌଣସି କୌଶଳରେ ସେହି ଅର୍ଥ ଆତ୍ମସାତ୍ କରିବାକୁ ପାରେ, ଏହି ଭରସାରେ ହରେନ୍ଦ୍ରଙ୍କ ପ୍ରତି ବେଶ୍ୟାର ଏପର୍ଯ୍ୟନ୍ତ ପ୍ରେମର ଅଭାବ ହୋଇ ନାହିଁ । ବେଶ୍ୟାଟାର ନାମ ମତି ।

ସେ ଅନେକ ଦିନହେଲା ନିଜ ହସ୍ତରୁ ପଇସା ଖରଚ କରି ହରେନ୍ଦ୍ରଙ୍କୁ ମଦ ପିଆଉଅଛି; ମନର ସହିତ ସେ ତାହାଙ୍କୁ ପ୍ରେମ ଦେଖାଉଅଛି; ହରେନ୍ଦ୍ର ବାବୁ ମତି ବେଶ୍ୟାର ପ୍ରେମରେ ମୋହିତ ହୋଇ ହରିଦାସୀଙ୍କର ଅପୂର୍ବ ସରଳ ପ୍ରେମ ପାସୋରି ଯାଇଅଛନ୍ତି । ହରେନ୍ଦ୍ର ଫାଟକରୁ ମୁକ୍ତ ହୋଇ ମତି ବେଶ୍ୟାର ଘରକୁ ଆସିଲେ, ମତି ତାହାଙ୍କୁ କେତେ ଆଦର ଓ କେତେ ଯତ୍ନ କଲା, କେତେ ସାନ୍ତ୍ୱନା କଲା । ତାଙ୍କର ଫାଟକରେ ବନ୍ଦ ହେବାର କଥା ଶୁଣି ତାହାର ଅକ୍ଷିରୁ ଦୁଇ ତିନି ଟୋପା ଲୁହ ପଡିଲା । ତାହାଙ୍କୁ ଉଦର ପୂର୍ଣ୍ଣ କରି ମଦ ପାନ କରିବାକୁ

ଦେଲା । ଅବଶେଷରେ ହରିଦାସୀଙ୍କ ଗାଲ ଦେଉ୍ କହଲା, "ଶୁଣିଥିଲ ତୁମ୍ଭର ବୋହୁ ପରା ବଡ଼ ଭଲ, ଏହ୍ୱ ପରା ତାର ପ୍ରେମ ?"

ହରେନ୍ଦ୍ର । ମୁଁ ଅଉ ତାହାର ମୁଖ କେବେ ଦେଖିବ ନାହିଁ ।

ମତି । ହାତରେ ଟଙ୍କା ଥାଉଁ ଯେତେବେଳେ ସେ ତୁମ୍ଭଙ୍କୁ ଦମ୍ପାମୀ ଫାଟକରେ ଦେଇଅଛୁ, ସେତେବେଳେ ତାର ଅସାଧ୍ୟ ଅଉ କଅଣ ଅଛି ? ଅମ୍ଭେମାନେ ତ ବେଶ୍ୟା, ଲୋକେ କହନ୍ତି ବେଶ୍ୟାଙ୍କର ପ୍ରେମ କେବଳ ମିଥ୍ୟା ; କିନ୍ତୁ ତୁମ୍ଭେ ଦମ୍ପାମୀ ଫାଟକରେ ପଡ଼ିଅଛ ଶୁଣି ମୁ ଭାବି ମରିଯାଉଥିଲି ; ଆଜ ତୁମ୍ଭେ ନ ଅସିଥିଲେ ଦେଖିଥାନ୍ତ ମୁଁ କାଲି କଅଣ କରିଥାନ୍ତି ; ନିଶ୍ଚୟ ଅଳଙ୍କାର ସବୁ ବିକାପକାଇ ତୁମ୍ଭଙ୍କୁ ମୁକୁଳାଇଥାନ୍ତି ।

ହରେନ୍ଦ୍ରଙ୍କର ପ୍ରାଣ ଏକାବେଳକେ ତରଳିଗଲା । ସେ ଅନ୍ତରରେ, ଓ ବାହାରେ ଓ ସବୁଠାରେ ମତି ବେଶ୍ୟା ଭିନ୍ନ ଅଉ କାହାକୁ ଦେଖି ପାରିଲେ ନାହିଁ । ସେହିଦିନ ଏହି ଭାବରେ କଥାବାର୍ତ୍ତା କରୁ ମହାନନ୍ଦରେ ସମୟ କଟିଗଲା ; ପରଦିନ ପରାମର୍ଶ ହେଲା, ହରଦାସୀଙ୍କ ହାତରେ ଯେତେ କୋମ୍ପାନୀ କାଗଜ ଓ ଅର୍ଥ ଅଛି ସେ ସମସ୍ତ ବାହାରକରି ନେଇ-ଯିବେ, ଏବଂ ହତଭାଗିନୀ ହରଦାସୀକି ବିଷ ଖୁଆଇ ମାରି ପକାଇବେ ।

---

## ସପ୍ତମ ଅଧ୍ୟାୟ

ହରେନ୍ଦ୍ର କଲିକତାକୁ ଅସି ଶ୍ୱଶୁରଙ୍କର ବିଷୟ ସମ୍ପତ୍ତି ଯେତେବେଳେ ବୁଝିନେଲେ, ସେହି ସମୟରେ କାର୍ଯ୍ୟର ସୁବିଧା ନିମନ୍ତେ ହରଦାସୀଙ୍କ ନିକଟରୁ ଖଣ୍ଡେ ଆମମୋକ୍ତାରନାମା ଲେଖିପଡି ନେଇଥିଲେ ।

ଅଭାବ ହେଲେ ମନୁଷ୍ୟର ପାପ ପୁଣ୍ୟ, ଧର୍ମାଧର୍ମ, କର୍ତ୍ତବ୍ୟାକର୍ତ୍ତବ୍ୟ କିଛି ଜ୍ଞାନ ରହେ ନାହିଁ । ହରେନ୍ଦ୍ରଙ୍କର ବଡ ଅର୍ଥର ଅଭାବ ଉପସ୍ଥିତ ।

ଅଉ କେହ ତାହାଙ୍କୁ ଟଙ୍କା କରଜ ଦେଉ ନାହାନ୍ତି । ପୁଣି ହରିଦାସୀଙ୍କ ନିକଟରେ ଟଙ୍କା ମାଗିବାକୁ ସାହସ ହେଉ ନାହିଁ । ମତ୍ତ ଅନେକ ଦିନ ପର୍ଯ୍ୟନ୍ତ ତାଙ୍କର ମଦ ଖରଚ ଚଳାଇଅଛି ; କିନ୍ତୁ ଭବିଷ୍ୟତରେ ତାହାର ବିଶେଷ କୌଣସି ଟଙ୍କା ପାଇବାର ଆଶା ନ ଦେଖି ସେବି ମଧ୍ୟ ଖରଚ ଦେବା ବନ୍ଦ କରି ଦେଇଅଛି, ଓ ତାହାଙ୍କ ସଙ୍ଗରେ କଳି କଜିଆ କରିବାକୁ ଆରମ୍ଭ କରିଅଛି । ଏଅତେ ହରେନ୍ଦ୍ର ମଦ ପାଉ ନାହାନ୍ତି, ପୁଣି ମତ୍ତ ବେଶ୍ୟା ପୂର୍ବପରି ତାହାଙ୍କୁ ଭଲ ପାଉ ନାହିଁ ଦେଖି ତାଙ୍କର ମନ ବିଚଳିତ ହୋଇଗଲାଣି । କିପରି କଲେ ତାଙ୍କର ଅର୍ଥର ଅଭାବ ପୂର୍ଣ୍ଣ ହେବ, ମତ୍ତ ବେଶ୍ୟାକୁ କିପ୍ରକାରେ ସନ୍ତୁଷ୍ଟ କରିବେ, ଏହି ଚିନ୍ତାରେ ସେ ଅସ୍ଥିର ହୋଇଗଲେ । ଅବଶେଷରେ ଅନେକ ଚିନ୍ତା ଭାବନାର ପର ସ୍ଥିର କଲେ ଯେ ଶ୍ୱଶୁରଙ୍କର ବସା ଘରଟିକୁ ବିକ୍ରୟ କରିବେ । ସେଥିପାଇଁ ଦୁଇ ପାଞ୍ଚଣ ଗ୍ରାହକ ମଧ୍ୟ ମିଳିଗଲେ । ବସା ଘରଟିର ପ୍ରକୃତ ମୂଲ୍ୟ ଟ ୧୦୦୦୦ ଙ୍କା, କିନ୍ତୁ ଗରଜ ପକାଶେ କୌଣସି ଦ୍ରବ୍ୟ ବିକ୍ରୟ କରିବାକୁ ହେଲେ କେବେ ତାହାର ଉଚିତ ମୂଲ୍ୟ ମିଳେ ନାହିଁ । ବିଶେଷତଃ ଗଣେଶର ବାବୁଙ୍କର ଭଗ୍ନୀ ଉତ୍ତରାଧିକାରୀ ଉନୋଟି ଦୌହିତ୍ର ବର୍ତ୍ତମାନ ଅଛନ୍ତି, ହରିଦାସୀ ମଧ୍ୟ ତାହାଙ୍କର କନ୍ୟା । ହିନ୍ଦୁ ଆଇନ ଅନୁସାରେ କନ୍ୟାଙ୍କର ସ୍ଥାବର ସମ୍ପତ୍ତି ବିକ୍ରୀ କରି ଦେବାର କୌଣସି ଅଧିକାର ନାହିଁ । ସେଥିପାଇଁ ଭବିଷ୍ୟତରେ ବିପଦର ଆଶଙ୍କା ଅଛି, ଏହା ମନରେ କରି ଦୁଇ ହଜାର ଟଙ୍କାରୁ ଅଧିକ ଦେଇ କେହି କିଣିବାକୁ ମଙ୍ଗିଲେ ନାହିଁ । ହରେନ୍ଦ୍ରଙ୍କର ଟଙ୍କାର ଆବଶ୍ୟକ ଅଛି, ତାହାଙ୍କର ଟଙ୍କା ପାଇବାର ଗରଜଟା ବଡ ବେଶି, ସେ ସେଥିରେ ଅଙ୍ଗୀକାର କରି ଦୁଇଶ ଟଙ୍କା ବଇନା ନେଇ ହରିଦାସୀଙ୍କ ଅଜ୍ଞାତସାରେ ବଇନାନାମା ଲେଖି ପଡି ଦେଲେ । ତାରପରେ ଖଣ୍ଡେ କବାଲା ଲେଖି ହରିଦାସୀଙ୍କ ଦସ୍ତଖତ ପାଇଁ ତାହାଙ୍କ ନିକଟରେ ଉପସ୍ଥିତ ହେଲେ ।

ବାବୁଙ୍କ ସହିତ ହରିଦାସୀଙ୍କର ଅନେକ ଦିନ ହେଲା ଦେଖା ସାକ୍ଷାତ ହୋଇ ନ ଥିଲା, ଏବଂ ସେଥିପାଇଁ ସେ କାତର ହୋଇ ଯିବାରୁ ତାଙ୍କ ମନରେ କିଛି ସୁଖ ଦୁଃଖ ମଧ୍ୟ ନ ଥିଲା ; ହରିଦାସୀଙ୍କ ହୃଦୟ ପାଷାଣ ପରି ହୋଇ ଯାଇ ଥିଲା ।

ହରେନ୍ଦ୍ର ଧୀରେ ୨ ଆସି ସ୍ତ୍ରୀଙ୍କ ନିକଟରେ ବସିଲେ, ଏ କଥା ସେ କଥା କହି ୨ ମଧୁର ଆଲାପ କରି କଥା ଆରମ୍ଭ କଲେ । ସେ ଦୁଇ ଜଣଙ୍କର ପ୍ରାଣ ଆଉ ପୂର୍ବପରି ଏକ ନାହିଁ । ସେମାନଙ୍କର ଦୁଇଟି ହୃଦୟ ଦିନେ ଏକ ଥିଲା, କିନ୍ତୁ ଏବେ ମଦ ବିଭିନ୍ନ କରି ଦେଇଅଛି । ସେମାନଙ୍କର ହୃଦୟ ଦୁଇଟି ମଧ୍ୟରେ ଯେମନ୍ତ ଗୋଟିଏ ପ୍ରଶସ୍ତ ଗଡ଼ା ପଡ଼ି ଯାଇ-ଅଛି । ଉଭୟ ଉଭୟଙ୍କ ନିକଟରେ ଅପରାଧୀ । ହରେନ୍ଦ୍ରଙ୍କ ଅପରାଧ ଅତି ଗୁରୁତର, ସେ ବେଶ୍ୟାସକ୍ତ ହୋଇଅଛନ୍ତି । ହରିଦାସୀଙ୍କର ସ୍ୱାମୀ ଉପରେ ଆଉ ବିଶ୍ୱାସ ନାହିଁ । ଯେମନ୍ତ ଦୁଇଟି ଅପରିଚିତ ବ୍ୟକ୍ତି ଏକତ୍ର ବସି କଥାବାର୍ତ୍ତା କରୁଅଛନ୍ତି । ଏତେକ୍ଷଣ କଥାବାର୍ତ୍ତା କଲା ଉତ୍ତାରେ ହରେନ୍ଦ୍ର କହିଲେ, "ଆମ୍ଭମାନଙ୍କର ଏ ଘରଟି ବିକ୍ରୟ କଲେ କି ଭଲ ହୁଅନ୍ତା ନାହିଁ ?"

ହରେନ୍ଦ୍ର । କାହିଁକି ନା ଆଉ ଗୋଟିଏ ଘର କିଣିବା ।

ହରିଦାସୀ । ଏ ବସାରେ କଅଣ କ୍ଷତି ହେଲାକି ?

ହରେନ୍ଦ୍ର । ଅନେକ ଟଙ୍କା ଟେକ୍ସ ଦେବାକୁ ହୁଏ, ଆମ୍ଭମାନଙ୍କର ଏକ୍ଷଣି ଯେମନ୍ତ ଅବସ୍ଥା, ସେଥିରେ ଏତେବଡ଼ ଘରେ ବସାକରି ରହିବା ମତେ ଭଲ ଦିଶୁ ନାହିଁ, ଯାହାର ଯେପ୍ରକାର ଅବସ୍ଥା ତାହାର ସେହି ପ୍ରକାର ଘରେ ରହିବା କର୍ତ୍ତବ୍ୟ ।

ହରିଦାସୀ ପଚାରିଲେ, "ଆମ୍ଭମାନଙ୍କର ଅବସ୍ଥା କାହିଁକି ଏପରି ହେଲା ? କାହା ଦୋଷରୁ ଲକ୍ଷ୍ମୀ ଛାଡ଼ିଗଲେ ?"

ହରେନ୍ଦ୍ର ବକ୍ରଭାବ ହୋଇ କହିଲେ, "ଲକ୍ଷ୍ମୀ ଯାହା ଦୋଷରୁ ଛାଡ଼ି ଯାଉନ୍ତୁ ନା କାହିଁକି, ଯେତେବେଳେ ଛାଡ଼ି ଗଲେଣି ସେତେବେଳେ ଏହି ସାମାନ୍ୟ ଟଙ୍କାରେ ବେଶି ଟେକ୍ସ ନ ଦେଇ ଅନ୍ୟ ଖରଚ କଲେ ଭଲ ହୁଅନ୍ତା ନାହିଁ କି?"

ହରିଦାସୀ ସେ କଥାର କୌଣସି ଉତ୍ତର ନ କରି ଅଭି ଗୋଟିଏ ଘରକୁ ଉଠିଗଲେ ।

ହରେନ୍ଦ୍ର ଅଳ୍ପକ୍ଷଣ ବସି କ ଭାବିଲେ, ଭାବି ହରିଦାସୀ ନିକଟରେ ଯାଇ କହିଲେ, "ମୁଁ ଘର ବନ୍ଧୀ କରୁଅଛି, କେତେକ ଟଙ୍କା ମଧ୍ୟ ନେଇ-ଅଛି, ଏହିକ୍ଷଣି କେବଳ ତୁମ୍ଭର ଅନୁମତି ଆବଶ୍ୟକ, ବର୍ତ୍ତମାନ ତୁମ୍ଭଙ୍କୁ ସେହି ଅନୁମତି ଦେବାକୁ ହେବ ।"

ଏହା କହି ହରେନ୍ଦ୍ର ପକେଟରୁ ଷ୍ଟାମ୍ପକାଗଜ ଲେଖା କବାଲା ବାହାର-କରି ହରିଦାସୀଙ୍କ ହାତରେ ଦେଲେ ଏବଂ ଦୁଆତ କଲମ ଆଣିବାପାଇଁ ବାହାରକୁ ଗଲେ ।

ହତଭାଗିନୀ ହରିଦାସୀ ଚକ୍ଷୁରେ ଅତି ଅନ୍ଧକାର ଦେଖିଲେ, ତାଙ୍କର ମସ୍ତକ ଘୂରିବାକୁ ଲାଗିଲା, କାଗଜରେ କଅଣ ଲେଖାଅଛି ତାହା ପଢ଼ି-ବାକୁ ଆଉ ତାଙ୍କର କ୍ଷମତା ହେଲା ନାହିଁ, ତାଙ୍କର ଅଜ୍ଞାତସାରରେ କବାଲା ଖଣ୍ଡ ତଳେ ପଡ଼ିଗଲା ; ଏମନ୍ତ ସମୟରେ ବାବୁ ଦୁଆତ କଲମ ଆଣି ହରିଦାସୀଙ୍କି ତହିଁରେ ଦସ୍ତଖତ କରିବାକୁ କହିଲେ । ଏବଂ ସାକ୍ଷୀ କରିବା ନିମନ୍ତେ ଯେଉଁମାନଙ୍କୁ ଡାକିଆଣି ଦାଣ୍ଡରେ ବସାଇଥିଲେ ସେମାନଙ୍କୁ ମଧ୍ୟ ଡାକିଲେ ।

ହରିଦାସୀ ଘୋର ବିପଦ ଉପସ୍ଥିତ ହେଲା ଦେଖି ସ୍ୱାମୀଙ୍କର ପାଦ ଧରି ପିଲାମାନଙ୍କର ଦଶା କଅଣ ହେବ ବୋଲି କାନ୍ଦିବାକୁ ଲାଗିଲେ । ନରାଧମ ତାହା ଶୁଣିଲା ନାହିଁ, ବଜ୍ରମୁଷ୍ଟିରେ ସ୍ତ୍ରୀର ହସ୍ତ ଧରି ଦସ୍ତଖତ କରିବା ନିମନ୍ତେ ଅନେକ ଜବରଦସ୍ତ କଲା ।

ନାମ ଦସ୍ତଖତ କରିବା ପାଇଁ ହରଦାସୀ କୌଣସି ପ୍ରକାରେ ମଙ୍ଗିଲେ ନାହିଁ । ନରପିଶାଚ ହରେନ୍ଦ୍ର ଓ ତାର ସଙ୍ଗୀମାନେ ହରଦାସୀଙ୍କ ଉପରେ ବଳ ପ୍ରୟୋଗ କରୁଅଛନ୍ତି, ହତଭାଗିନୀ ଚତ୍କାର ଶବ୍ଦ କରୁଅଛି, ସେହି ଶବ୍ଦ ଶୁଣି ଦାଣ୍ଡର ଲୋକମାନେ ଜମା ହୋଇଅଛନ୍ତି ; ଦୁଇ ତିନି ଜଣ ପ୍ରତିବାସୀ ଘରମଧ୍ୟରେ ପ୍ରବେଶ କରିବାକୁ ଚେଷ୍ଟା କରୁଅଛନ୍ତି ଦେଖି ହରେନ୍ଦ୍ର କ୍ରୋଧରେ ଅଧୀର ହୋଇ ହରଦାସୀଙ୍କ ବକ୍ଷରେ ଯୋତା ସହିତ ପଦାଘାତ କଲା । ହତଭାଗିନୀ ଅଚେତନ ହୋଇ ପଡିଗଲେ, ତାଙ୍କର ମୁଖରୁ ରକ୍ତ ପଡିବାକୁ ଲାଗିଲା । ଦୁଷ୍ଟ ଲୋକମାନେ ଭୟରେ ପଳାୟନ କଲେ ।

ହରେନ୍ଦ୍ର ଘର ବନ୍ଧୀ କରିବାପାଇଁ ଟଙ୍କା ନେଇଅଛନ୍ତି; ଘର ବନ୍ଧୀ ନ ହେଲେ ଟଙ୍କା ଫେରାଇ ଦେବାର କଥା ଅଛି; କିନ୍ତୁ ସେ ଟଙ୍କା ଆଉ ନାହିଁ । କିଛି ମଦ ଦୋକାନର ଋଣ ସକାଶେ ଖରଚ ହୋଇଅଛି; ବାକୀ ସବୁ ଟଙ୍କା ମତିବେଶ୍ୟାର ବାକ୍ସରେ ପଡିଅଛି । ହରେନ୍ଦ୍ରବାବୁଙ୍କର ତିନସ ଟଙ୍କାର ଆବଶ୍ୟକ; ଘର ବନ୍ଧୀ କଲେ ଟ ୯୮୦୦ କା ପାଇ-ବାର କଥା ଅଛି । ଆମମୁକ୍ତାରନାମାର ବଳରେ ହରେନ୍ଦ୍ର ହରଦାସୀଙ୍କ ନାମ ଜାଲ୍ କରି କବାଲଟି ରେଜେଷ୍ଟ୍ରି କରିଦେଲେ । ଏବଂ ତାଙ୍କର କେତେକ ଜଣ ସଙ୍ଗୀଙ୍କି କିଛି ଟଙ୍କା ଲାଞ୍ଚ ଦେଇ ଓ କେତେକ ବୋତଲ ମଦ ପାନ କରିବାକୁ ଦେଇ ସାକ୍ଷୀର ସ୍ୱାକ୍ଷର କରାଇ ନେଲେ ।

ସ୍ୱାମୀଙ୍କର ପଦାଘାତ ସକାଶେ ହରଦାସୀଙ୍କ ହୃଦୟଯନ୍ତ୍ରରେ ଅତ୍ୟନ୍ତ ବେଦନା ଉପସ୍ଥିତ ହୋଇଅଛି, ସେହି ବେଦନାର କୋପରୁ ହରଦାସୀଙ୍କି ଜ୍ୱର ହେଉଅଛି ଏବଂ ମୁଖ ଦେଇ ମଧ୍ୟ ରକ୍ତ ପଡୁଅଛି । ହରଦାସୀଙ୍କର ଉଠିବା ଶକ୍ତି ଆଉ ନାହିଁ । ସେହି ଦିନଠାରୁ ହରଦାସୀ କଷ୍ଟାବେଗରେ ଅକ୍ରାନ୍ତ ହୋଇଅଛନ୍ତି । ଗ୍ରାମର ଜଣେ ଡାକ୍ତର, ସ୍ୱମେ-

ଣ୍ୱର ବାବୁଙ୍କ ସହିତ ତାଙ୍କର ବିଶେଷ ବନ୍ଧୁତା ଥିଲା; ସେ ହରିଦାସୀଙ୍କର ଚିକିତ୍ସା କରୁଅଛନ୍ତି ।

ହରିଦାସୀଙ୍କ ବକ୍ଷରେ ଭୟାନକ ବେଦନା । ଡାକ୍ତରବାବୁ ଜାଣନ୍ତି ଯେ ପଡ଼ିଯିବାରୁ ସ୍ଥଳରେ ବେଦନା ହୋଇଅଛି । ହତଭାଗିନୀ ତାଙ୍କ ସ୍ୱାମୀଙ୍କ ଅତ୍ୟାଚାରର କଥା କୌଣସି ଦିନ କାହାରି ନିକଟରେ ପ୍ରକାଶ କରି ନାହାନ୍ତି ।

ଗତ ରାତ୍ରିରେ ତାହାଙ୍କୁ ବଡ଼ ବେଶି ଜ୍ୱର ହୋଇଥିଲା, ରକ୍ତ ମଧ୍ୟ ବେଶି ପରିମାଣରେ ପଡ଼ିଥିଲା । ସେହି ହତଭାଗିନୀ ହରିଦାସୀଙ୍କୁ ବର୍ତ୍ତମାନ ଜଣ୍ଟା ବେଗ ଧରିଅଛି । ତାଙ୍କର ପିଲା ତିନୋଟି ଶଯ୍ୟା ନିକଟରେ ବସି-ଅଛନ୍ତି । ହରିଦାସୀ ବୁଝିଅଛନ୍ତି ଯେ ତାହାଙ୍କର ଜୀବନ-ଦୀପ ନିଭିଲା ପ୍ରାୟ; ଆଉ ଅଧିକ ବିଳମ୍ବ ନାହିଁ । ଏହି ପିଲାମାନଙ୍କୁ ଦେଖିବା ପାଇଁ ଜଗତରେ ଆଉ ସେମାନଙ୍କର କେହି ନାହାନ୍ତି, ସେମାନଙ୍କର ଅବସ୍ଥା କଅଣ ହେବ, କିଏ ସେମାନଙ୍କର ମୁଖକୁ ଚାହିଁ ମନ ଜାଣି ମୁଠିଏ ଭାତ ଖାଇବାକୁ ଦେବ, ଏହି କଥା ଭାବି ହରିଦାସୀଙ୍କର ଚକ୍ଷୁରୁ ଅନବରତ ଜଳ ପଡୁଅଛି । ବଡ଼ ପିଲାଟି କହୁଅଛି "ମା, କାନ୍ଦ ନାହିଁ, ବେଗମ ଭଲ ହୋଇଯିବ", ଏହି ପ୍ରକାରେ କେତେ କଥା କହି ବୁଝାଉଅଛି ଏବଂ ନିଜ ହାତରେ ମାଅଙ୍କ ଅକ୍ଷିରୁ ଲୁହ ପୋଛି ଦେଉଅଛି । ଏମନ୍ତ ସମୟରେ ଦାଣ୍ଡରେ ଲୋକମାନଙ୍କର କୋଳାହଳ ଶୁଣାଗଲା । କ୍ଷଣକ ପରେ ଚାକ-ରାଣୀ ଆସି ଖବର ଦେଲା ଯେ, ଜୁଆଇଁ ବାବୁ ଘର ବିକ୍ରୟ କରିଅଛନ୍ତି, ହରିଦ୍ୱାରର ଲୋକମାନେ ଘର ଦଖଲ କରିବାକୁ ଆସିଅଛନ୍ତି ।

ଯେ ଘର ବନ୍ଧୀ କରିବାକୁ ଅସ୍ୱୀକାର କରିବାରୁ ଆଜ ହରିଦାସୀଙ୍କର ଏମନ୍ତ ଅବସ୍ଥା, ସେ ଘର ବନ୍ଧୀ ହୋଇ ଗଲାଣି । ତାହାଙ୍କର ଶରୀରରୁ ଅନବରତ ଝାଳ ବୋହୁଅଛି; ଏହିକ୍ଷଣି କଅଣ କରିବା କର୍ତ୍ତବ୍ୟ ତାହା ସ୍ଥିର କରିବାକୁ ଅକ୍ଷମ ହେବାରୁ ହରିଦାସୀ ଜଣେ ପ୍ରତିବାସୀଙ୍କ ଡକାଇ ତାହା

ଦ୍ୱାରା ସେହି ଲୋକମାନଙ୍କ ନିକଟକୁ କହି ପଠାଇଲେ ଯେ, ସେ ବସାଘର ବିକ୍ରୟ କରି ନାହାନ୍ତି । ସେଥିରେ ସେମାନେ ଖଣ୍ଡେ କବାଲା ବାହାର କରି ଦେଖାଇଲେ, ତହିଁରେ ହରିଦାସୀଙ୍କର ନାମ ଦସ୍ତଖତ ହୋଇଅଛି । ହରିଦାସୀ ସେ କଥା ଶୁଣି ବୁଝିଲେ ଯେ, ହରେନ୍ଦ୍ର ତାଙ୍କର ନାମ ଜାଲ୍ କରି ଏପରି ସର୍ବନାଶ କରିଅଛନ୍ତି ।

ଘରର ଘରଣୀଙ୍କ ପୀଡ଼ା କଥା ଶୁଣି ଖରିଦ୍‌ଦାରଙ୍କ ଲୋକମାନେ ତିନି ଦିନ ମଧ୍ୟରେ ଘର ଛାଡ଼ିଦେବା ନିମନ୍ତେ ସମୟ ଦେଇ ଚାଲିଗଲେ । ଏହି ସମୟ ମଧ୍ୟରେ ହରଦାସୀ ଓକିଲ ଘରକୁ ଲୋକ ପଠାଇ ଜାଣିଲେ ଯେ, ଖରିଦଦାର ସହିତ ପରାମର୍ଶ କରି ହରେନ୍ଦ୍ର ବାବୁ ଜାଲ୍ କରିଅଛନ୍ତି ଏହା ପ୍ରମାଣ କରି ପାରିଲେ ସେ ବିକ୍ରୟ-ଦଲିଲ୍ କେବେ ସ୍ଥିର ହେବ ନାହିଁ । କିନ୍ତୁ ଜାଲ୍ ପ୍ରମାଣ ହେଲେ ହରେନ୍ଦ୍ର ବାବୁଙ୍କର କଏଦ ହେବାର ସମ୍ଭାବନା ।

ଏକ ପକ୍ଷରେ ଜନ୍ମଭୂମି, ଅନ୍ୟ ପକ୍ଷରେ ସ୍ୱାମୀ; ଯଦିଚ ସେ ହର-ଦାସୀଙ୍କୁ ପରିତ୍ୟାଗ କରିଅଛନ୍ତି, ଘର ବିକ୍ରୟ କରି ପିଲା ତିନୋଟିଙ୍କୁ ଦାଣ୍ଡରେ ବସାଇଛନ୍ତି, କିନ୍ତୁ ଜାଲ ପ୍ରମାଣ ହେଲେ ହରେନ୍ଦ୍ର ବାବୁଙ୍କ କଏଦ ହେବାକୁ ହେବ ଶୁଣି ପତିପ୍ରାଣା ସତୀ ହରଦାସୀ ଚମକି ଉଠିଲେ । ଟଙ୍କା ନେଇ ଘର ଫେରାଇ ଦେବା ନିମନ୍ତେ ହରଦାସୀ ଖରିଦଦାର ଗୃହକୁ ଲୋକ ପଠାଇଲେ, କିନ୍ତୁ ଖରିଦଦାର ସେ କଥା ଅଙ୍ଗୀକାର କଲେ ନାହିଁ ।

ସ୍ୱାମୀଙ୍କର କାରାବାସ ଭୟରେ ହରଦାସୀ ଖରିଦଦାର ସଙ୍ଗେ ମୋକ-ଦ୍ଦମା କରିବାକୁ ସାହସ କଲେ ନାହିଁ, ଘର ଛାଡ଼ି ଦେବାପାଇଁ ମନେ୨ ପ୍ରସ୍ତୁତ ହେଲେ । ହରଦାସୀଙ୍କର ହେମ୍ବର ପିତାମାତା ଯେଉଁଠାରେ ମାନବଲୀଳା ସମ୍ବରଣ କରିଅଛନ୍ତି, ହରଦାସୀ କଲିକତାକୁ ଆସି ସେହି

ଦୁଇ ସ୍ଥାନରେ ଦୁଇଟି ଦେଉଳ ନିର୍ମାଣ କରାଇଅଛନ୍ତି । ହତଭାଗିନୀ ପ୍ରତି-ଦିନ ସକାଳେ ଓ ସନ୍ଧ୍ୟାବେଳେ ସେହି ମନ୍ଦିର ମଧ୍ୟରେ ପ୍ରବେଶ କରି ଗଳାରେ ଲୁଗା ବାନ୍ଧି ଆପଣା ମନେ ମନେ ସେମାନଙ୍କ ସଙ୍ଗରେ କେତେ କଥୋପକଥନ କରନ୍ତି, ତାଙ୍କର ପିଲା ତିନୋଟିଙ୍କି ଆଶୀର୍ବାଦ କରିବାକୁ କହନ୍ତି, ପିତାମାତା ଯେ ସକଳ ଦ୍ରବ୍ୟ ଖାଇବା ନିମନ୍ତେ ଭଲ ପାଉଥିଲେ କେତେକ ଦିନ ସେହି ପ୍ରକାର ସାମଗ୍ରୀ ପ୍ରସ୍ତୁତ କରି ସେମାନଙ୍କ ଉଦ୍ଦେଶ୍ୟରେ ମନ୍ଦିର ମଧ୍ୟରେ ରଖି ଆସନ୍ତି । ହରିଦାସୀ ଘର ଛାଡ଼ିଯିବା ପୂର୍ବରୁ ଏ ଜନ୍ମ ପାଇଁ ଥରେ ପିଲା ତିନୋଟିଙ୍କୁ ଘେନି ପ୍ରଥମତଃ ମାତାଙ୍କର ଦେଉଳକୁ ପରେ ପିତାଙ୍କର ଦେଉଳକୁ ଗଲେ । ଦେଉଳ ମଧ୍ୟରେ ପିତା ମାତା-ଙ୍କର ଦୁଇ ଖଣ୍ଡ ବଡ଼ ବଡ଼ ଛବି ଟାଙ୍ଗି ରଖିଥିଲେ, ସେହି ଛବି ଦୁଇଟିକି ଚାହିଁ ଆଜି ତାଙ୍କର ମନରେ କେତେ ଦିନର କେତେ ପୁରୁଣା କଥା ପଡ଼ିଗଲା; ମାତାଙ୍କର ସ୍ନେହ, ପିତାଙ୍କର ଆଦର ମନରେ ପଡ଼ିବାରୁ ଶୋକ-ବେଗ ଉଚ୍ଛୁଳି ଉଠିଲା । ହତଭାଗିନୀ ହରିଦାସୀ ଭୂମିରେ ପଡ଼ି "ବାପା, ତୁମ୍ଭର ହରିଦାସୀ ଆଜି କି ଦୁର୍ଦ୍ଦଶାରେ ପଡ଼ିଛି, ଥରେମାଏ ଆସି ଦେଖ," ଏହା କହି କେତେ କାନ୍ଦିଲେ, ଦେଉଳରୁ ମୃତ୍ତିକା ନେଇ ପିଲାମାନଙ୍କ ଦେହରେ ଲଗାଇ ଦେଲେ । ତାର ପରେ ଛବି ଦୁଇ ଖଣ୍ଡି ଯାକ ବାହାର କରି ଯତ୍ନପୂର୍ବକ ମସ୍ତକରେ ରଖି କାନ୍ଦୁ କାନ୍ଦୁ ଦେଉଳରୁ ବାହାର ହେଲେ

---

## ଅଷ୍ଟମ ଅଧ୍ୟାୟ

ହରିଦାସୀ ଗୋଟିଏ ସାନ ଘର ଭଡ଼ା କରିଅଛନ୍ତି, ଶୋକ, ଦୁଃଖ ଓ ନାନାପ୍ରକାର କଷ୍ଟରେ ତାଙ୍କର ପୀଡ଼ା ଅତ୍ୟନ୍ତ ବୃଦ୍ଧି ପାଇଅଛି; ଅଭାଗିନୀ ହରିଦାସୀ ବୁଝିଲେଣି ଯେ, ମୁହୂର୍ତ୍ତକୁ ମୁହୂର୍ତ୍ତ ତାଙ୍କର ଆୟୁ ସରି ଯାଉଅଛି । ବଞ୍ଚିରହିବାକୁ ଆଉ ଇଚ୍ଛା ନାହିଁ, କିନ୍ତୁ ତାଙ୍କରପିଲାମାନଙ୍କର

ଯେ ଅଉ କେହି ନାହାନ୍ତି, ମରିଗଲେ ସେମାନଙ୍କର ଦଶା କଅଣ ହେବ, ଏହା ଭାବି ତାହାଙ୍କର ପ୍ରାଣ ବଡ଼ ଆକୁଳ ହେଉଅଛି । ପିଲା-ମାନଙ୍କୁ ହରିଦାସୀ କେବେ ଦଣ୍ଡେ ମଧ୍ୟ ପାଖଛଡ଼ା କରନ୍ତି ନାହିଁ; ସାନ ପିଲାଟିକି କୋଳରେ ଧରି ବାମାଚରଣ ଓ ଶ୍ୟାମାଚରଣଙ୍କୁ ଦୁଇ ପାଖରେ ବସାଇ ହରିଦାସୀ କହିଲେ, "ବାମାଚରଣ, ତୋର ଅଜା ମୋତେ ଡାକୁଅଛନ୍ତି, ଶୀଘ୍ର ଯାଇ ମୋତେ ତାହାଙ୍କ ସଙ୍ଗରେ ଦେଖା କରିବାକୁ ହେବ ।"

ବାମାଚରଣ । ମା, ଅଜା କେଉଁଠାରେ ଅଛନ୍ତି ?

ହରିଦାସୀ ଉପରକୁ ଅଙ୍ଗୁଳି ଦେଖାଇ କହିଲେ "ସ୍ବର୍ଗରେ ।"

ବାମାଚରଣ କହିଲା, "ତୋ ସଙ୍ଗରେ ଅମ୍ଭେମାନେ ବି ଅଜାଙ୍କ ପାଖକୁ ଯିବା ।"

ହରିଦାସୀ । ନା, ବାପା, ସେ କଥା କହ ନା ।

ବାମାଚରଣ । ତୁ ଯିବୁ, ଅମ୍ଭମାନଙ୍କୁ ନେଇ ଯିବୁ ନାହିଁ, ତେବେ ଅମ୍ଭେମାନେ କାହା ପାଖରେ ରହିବୁ ?

ହରିଦାସୀ ମୁଖରେ ଅଉ କଥା ଆସିଲା ନାହିଁ, ଝର ଝର ହୋଇ ଆଖିରୁ ଲୁହ ଗଡ଼ିବାକୁ ଲାଗିଲା; ସେହି ଶୋକରେ କଣ୍ଠ ରୁଦ୍ଧ ହୋଇଗଲା ।

ବାମାଚରଣ ମାଆର ଆଖି ପୋଛି ଦେଉଁ ଦେଉଁ କହିଲା, "କାହିଁକି କାନ୍ଦୁଛୁ ମା, ତୁ ଗଲେ ଅମ୍ଭେମାନେ ରହି ପାରିବୁ ନାହିଁ, ମା ଗୋ, ଅମ୍ଭମାନଙ୍କୁ ଛାଡ଼ି ତୁ କେଉଁଠାକୁ ଯାଉଛୁ ?"

ଅଭାଗିନୀ ହରିଦାସୀ ଅଉ ମନର ଆବେଗ ସମ୍ଭାଳି ପାରିଲେ ନାହିଁ, କଇଁ କଇଁ ହୋଇ କାନ୍ଦିବାକୁ ଲାଗିଲେ, ସେହି ସଙ୍ଗେ ସଙ୍ଗେ ପିଲାମାନେ ମଧ୍ୟ କାନ୍ଦିବାକୁ ଲାଗିଲେ; କାନ୍ଦୁ କାନ୍ଦୁ ହରିଦାସୀଙ୍କର କାଶ ଉପସ୍ଥିତ ହେଲା, କାଶୁ କାଶୁ ମୁଖରୁ ଅନେକ ରକ୍ତପାତ ହେଲା; ହରିଦାସୀ ମୂର୍ଚ୍ଛା ଗଲେ ।

ବାମାଚରଣ ଡାକିଲା, "ମା, ଗୋ ମା, ମା, କଥା କହ ମା ।"

ଏମନ୍ତ ସମୟରେ ଡାକ୍ତରବାବୁ ଆସି ଉପସ୍ଥିତ ହେଲେ ; ବାମାଚରଣ ବାବୁ ତାହାଙ୍କୁ କହିଲା, "ମା ଆଉ କଥା କହୁ ନାହିଁ ।"

ଡାକ୍ତର ବାବୁ ଶେଯରେ ଅନେକ ରକ୍ତ ଦେଖିଲେ ; ହରିଦାସୀଙ୍କର ନାଡ଼ୀ ପରୀକ୍ଷା କଲେ ଯେ, ଲକ୍ଷଣ ବଡ଼ ଭଲ ନୁହେ । ତରତର ହୋଇ ଔଷଧ ବାକ୍ସରୁ ଔଷଧ ଆଣି ହରିଦାସୀଙ୍କି ଶୁଙ୍ଘାଇ ଦେଲେ ଓ ପାନ କରାଇଲେ ; ଏହିପରି ଅନେକକ୍ଷଣ ଶୁଶ୍ରୂଷା କରିବାରୁ ତାହାଙ୍କର ଚେତନା ହେଲା ।

ହରିଦାସୀ ଡାକ୍ତର ବାବୁଙ୍କୁ କୌଣସି କଥା ନ କହିଲେ ମଧ୍ୟ ତାଙ୍କର ବୁଝିବାକୁ ଆଉ କିଛି ବିଳମ୍ବ ହେଲା ନାହିଁ । ସେ ଅତି ଯତ୍ନପୂର୍ବକ ହରି-ଦାସୀଙ୍କର ଚିକିତ୍ସା କରୁଅଛନ୍ତି, କିନ୍ତୁ ମୃତ୍ୟୁରୋଗର ଔଷଧ ଜଗତରେ ନାହିଁ, ଡାକ୍ତର ବାବୁ ଅନେକ ଦିନ ହେଲା ବୁଝିଅଛନ୍ତି ଯେ, ଏହି ରୋଗରୁ ମୁକ୍ତି ପାଇବାର ଆଶା କେବଳ ବୃଥାମାତ୍ର । ସେ ଦୁଇ ବେଳା ଆସନ୍ତି, କିନ୍ତୁ ହରେନ୍ଦ୍ର ବାବୁଙ୍କ ସଙ୍ଗରେ କେବେ ଦେଖା ହୁଏ ନାହିଁ । ସେ ହରେନ୍ଦ୍ର ବାବୁଙ୍କର ଗୁଣ ଶୁଣିଅଛନ୍ତି, ହରିଦାସୀ ମଲେ ତାଙ୍କ ପିଲାମାନଙ୍କର ଦଶା କି ହେବ ତାହା ମଧ୍ୟ ଭାବିଅଛନ୍ତି, କିନ୍ତୁ ଚିନ୍ତା କରି ଆଜି ପର୍ଯ୍ୟନ୍ତ କିଛି ସ୍ଥିର କରି ପାରି ନାହାନ୍ତି । ହରିଦାସୀଙ୍କର ଇଚ୍ଛା ଥିଲା ଯେ ଡାକ୍ତର ବାବୁଙ୍କୁ କିଛି କଥା କହି ଥାନ୍ତେ, କିନ୍ତୁ ସେ ଅବସ୍ଥାରେ କଥା କହିବାକୁ ଗଲେ ବିପଦ ଘଟିବାର ସମ୍ଭାବନା, ଏହା ବିବେଚନା କରି ଡାକ୍ତର ବାବୁ ତାହାଙ୍କୁ କଥା କହିବାପାଇଁ ନିଷେଧ କଲେ । ଆଉ କହିଗଲେ ଅବକାଶ ମିଳିଲେ ସେ ସମସ୍ତ କଥା ଶୁଣି ଯାହା କର୍ତ୍ତବ୍ୟ ତାହା କରିବେ ।

ହରେନ୍ଦ୍ର ହରିଦାସୀଙ୍କୁ ପଦାଘାତ କରି ଯିବା ଦିନଠାରୁ ଆଉ ଘରକୁ ଲେଉଟି ଆସି ନାହାନ୍ତି । ଘର ବିକ୍ରୀ କରିବାରୁ ହାତରେ କିଛି ଟଙ୍କା ହୋଇଅଛି ; ହଜାର ଟଙ୍କାରେ ମଣି ବେଶ୍ୟା ପାଇଁ ଗହଣା ଗଢାଇ

ଦେଇଅଛନ୍ତି । ବେଶ୍ୟାର ଆଦର, ବେଶ୍ୟାର ପ୍ରେମ ଅର୍ଥଗତ; ପୁରୁଷଙ୍କର ଅର୍ଥ ମଧୁ ଆହରଣ କରିବା ବେଶ୍ୟାଜୀବନର ଏକମାତ୍ର ଉଦ୍ଦେଶ୍ୟ । ହରେନ୍ଦ୍ରଙ୍କ ହାତରେ ଟଙ୍କା ହେବାରୁ ମଡ ତାହାଙ୍କୁ ଷୋଡ଼ଶ ଉପଚାରରେ ପୂଜା କରୁଅଛି । ମନ ସହିତ ତାହାଙ୍କୁ ପ୍ରେମ ଦେଖାଉଅଛି, ହରେନ୍ଦ୍ରଙ୍କର ଆଉ ଆଦରର ସୀମା ନାହିଁ । କିନ୍ତୁ ଛି, ହରେନ୍ଦ୍ର, ଛି ଛି, ତୁମ୍ଭେ କଅଣ କରୁଅଛ ? ତୁମ୍ଭେ ଅସଲ ମଡକ ଛାଡ ଦେଇ ନକଲ ମଡଙ୍କ ଆଦର କରୁଅଛ । ପତିପ୍ରାଣା ସତୀ ହରଦାସୀକି ପାସୋରି ବେଶ୍ୟା ପ୍ରେମରେ ଅସକ୍ତ ହୋଇଅଛ । ଧିକ୍, ଧିକ୍ ! ଯେଉଁ ଦିନ ଅର୍ଥ-ମଧୁ ସରିଯିବ ସେହି ଦିନ ବେଶ୍ୟାର ପ୍ରେମ ମଧ୍ୟ ଶେଷ ହେବ ।

ହରେନ୍ଦ୍ର ହରଦାସୀକି ଯେଉଁ ପଦାଘାତ କରିଥିଲେ, ଆଜି ସେ ସେହି ପଦାଘାତ ପାସୋରି ଯାଇଅଛନ୍ତି । କେତେକ ଦିନ ହେଲା ରୋଗଶଯ୍ୟାରେ ଶୋଇ ୨ ହରଦାସୀ ସ୍ୱାମୀ ସଙ୍ଗରେ ସାକ୍ଷାତ କରିବାକୁ ବଡ଼ ଇଚ୍ଛା କରିଅଛନ୍ତି । ତାହାଙ୍କୁ ଡାକ ନ ପଠାଇଲେ ହୋଇପାରେ ସେ ଅସିବେ ନାହିଁ । ହୋଇପାରେ, ଆଉ ଏ ଜୀବନରେ ତାଙ୍କ ସଙ୍ଗରେ ଦେଖା ହେବ ନାହିଁ । ଅତଏବ ଅନେକ ଭାବି ଚିନ୍ତି ଅବଶେଷରେ ହରଦାସୀ ଏହି ଭାଷା ଖଣ୍ଡିକ ଲେଖିଲେ—

ଜୀବିତେଶ୍ୱର,

ତୁମ୍ଭ ହରଦାସୀର ଜୀବନ ପ୍ରାୟ ଶେଷ ହୋଇ ଆସୁଅଛି । କେତେକ ଦିନ ହେଲା ତୁମ୍ଭଙ୍କୁ ଥରେ ଦେଖିବାପାଇଁ ପ୍ରାଣ ମୋର କେମନ୍ତ ବଡ଼ ଅକୁଳ ହୋଇ ଉଠୁଅଛି । ଯଦି ମୁଁ ତୁମ୍ଭଠାରେ କୌଣସି ଅପରାଧ କରିଥାଏ ତେବେ ମୋତେ କ୍ଷମା କରି ଥରେ ଅସି ଦେଖାଦେଇ ଯାଅ, ଏ ଜନମ ମାନଅ ତୁମ୍ଭଠାରୁ ମୁଁ ଚିରବିଦାୟ ନେବି ।

ତୁମ୍ଭର
ହରଦାସୀ ।

ଯଥା ସମୟରେ ପତ୍ର ଖଣ୍ଡିକ ହରେନ୍ଦ୍ର ବାବୁଙ୍କ ହସ୍ତଗତ ହେଲା । ଘର ବଳ୍କୀ ଦିନଠାରୁ ହରଦାସୀଙ୍କ ଅବସ୍ଥା କଅଣ ହୋଇଅଛି, ହରେନ୍ଦ୍ର ତାହା ବୁଝିବାର ଅବକାଶ ପାଇ ନାହାନ୍ତି । ପତ୍ର ପାଠ କରି ମୁହୂର୍ତ୍ତକ ପାଇଁ ତାଙ୍କର ମନ ଅକୁଳ ହୋଇ ଉଠିଲା ; ସେ ମନେ ମନେ ସ୍ଥିର କଲେ, ସନ୍ଧ୍ୟା ସମୟରେ ଯାଇ ଦେଖା କରିବେ । ମତି ତାହା ଜାଣିପାରି ହରେନ୍ଦ୍ରଙ୍କ ସଙ୍ଗରେ ଯିବା ନିମନ୍ତେ ପ୍ରସ୍ତୁତ ହେଲା ।

ବେଳ ପ୍ରାୟ ଉତରତ, ହରଦାସୀର ପିଲା ଦିଓଟି ଦାଣ୍ଡ ଦୁଆରେ ଖେଳୁଥିଲେ, ଏମନ୍ତ ସମୟରେ ହରେନ୍ଦ୍ରଙ୍କର ବଗୀ ଆସି ସେଠାରେ ଉପସ୍ଥିତ ହେଲା, ସଙ୍ଗରେ ମତି ବେଶ୍ୟା ଅଛି ।

ହରେନ୍ଦ୍ର ବଗୀରୁ ଓହ୍ଲାଇ ଆସିଲେ, ମତି କଅଣ ଭାବି ଗାଡିରେ ବସି ରହିଲା ; କଥା ହେଲା କେବଳ ଥରେମାତ୍ର ଦୃଷ୍ଟିପାତ କରି ହରେନ୍ଦ୍ର ଲେଉଟି ଆସିବେ । ସ୍ତ୍ରୀ ସାଙ୍ଗରେ ଦେଖା କରିବା ପାଇଁ ତାହାଙ୍କୁ କେବଳ ପାଞ୍ଚମିନିଟ୍ ସମୟ ହୁକୁମ ହେଲା ।

ଅନେକ ଦିନ ଉତ୍ତାରେ ପିତାଙ୍କୁ ଆସିବାର ଦେଖି ବାମାଚରଣ ଓ ଶ୍ୟାମାଚରଣ "ବାପା ଆସିଅଛନ୍ତି, ବାପା ଆସିଅଛନ୍ତି" ବୋଲି ଆହ୍ଲାଦରେ ପୂର୍ଣ୍ଣ ହୋଇ ଦୌଡି ଯାଇ ତାଙ୍କର ହାତ ଧରିଲେ ।

ବାମାଚରଣ କହିଲା, "ବାପା, ମା ବଡ଼ ବେମାର ହୋଇଅଛନ୍ତି, ତୁମେ ଦେଖିବ ଆସ ।" ତାହାଙ୍କର ହାତ ଧରି ଟାଣିବାକୁ ଲାଗିଲା । ଶ୍ୟାମା-ଚରଣ କହିଲା, "ବାପା, ଥରେ ମୋତେ କାଖ କରନା ।" ପିଲା ଦେହର ଧୂଳିରେ ଜାମା ମଇଲା ହୋଇଯିବ ଭାବି ହରେନ୍ଦ୍ର ସେ କଥାରେ କାନ ଦେଲେ ନାହିଁ, ପିଲାଟି ବଡ଼ ଦୁଃଖିତ ହେଲା ।

ହରେନ୍ଦ୍ର ଘରକୁ ଯାଇ ହରଦାସୀଙ୍କ ଶଯ୍ୟା ପାର୍ଶ୍ୱରେ ବସିବାମାତ୍ର ସେ କାନ୍ଦିବାକୁ ଲାଗିଲେ । ଅନେକ ଦିନର ଦୁଃଖ କଷ୍ଟ ଯାହା ସେ ମନ ମଧ୍ୟରେ ଆଜି ପର୍ଯ୍ୟନ୍ତ ଲୁଚାଇ ରଖିଥିଲେ, ହରେନ୍ଦ୍ରଙ୍କୁ ଦେଖି

ଯେମନ୍ତ ଅଜ ସେସବୁ ଭରନ୍ତି ଯାଇ ଶ୍ରାବଣଧାରା ପରି ଦୁଇ ଅଖିରୁ ଗଡିବାକୁ ଲାଗିଲା । ଅନେକ ଦିନ ପରେ ଅଜ ହୃଦୟଦାସୀ ସ୍ୱାମୀଙ୍କ ଗଲା ଧରି ଓ ତାହାଙ୍କ ବକ୍ଷରେ ମୁଖ ଲୁଚାଇ ଅନେକକ୍ଷଣ ପର୍ଯ୍ୟନ୍ତ କାନ୍ଦିବାକୁ ଲାଗିଲେ । ହରେନ୍ଦ୍ର ଯଦି ମନୁଷ୍ୟ ହୋଇଥାନ୍ତେ, ତାଙ୍କର ଯଦି ହୃଦୟ ଥାନ୍ତା, ତାହାହେଲେ ଅଜ ସେ ଭରନ୍ତିଯାନ୍ତେ ।

ହୃଦୟଦାସୀ ଦୁଃଖ କଷ୍ଟ ଓ ଅଭିମାନରେ ଫୁଲି ଫୁଲି ହୋଇ କାନ୍ଦିଲେ, କାନ୍ଦି କାନ୍ଦି କହିଲେ "ଅଉ ମୁଁ ତ ବଞ୍ଚିବି ନାହିଁ, ଯେ କେତେଦିନ ବଞ୍ଚିଅଛି ସେ କେତେଦିନ ଅଉ ମୋତେ ଫୋପାଡି ଦେଇ ଯାଅ ନାହିଁ ।"

ହୃଦୟଦାସୀଙ୍କର କଥା ଶେଷ ହେଉ ନ ହେଉଣୁ ମତି ଆସି ଉପସ୍ଥିତ ହେଲା ; ହୃଦୟଦାସୀ ହରେନ୍ଦ୍ରଙ୍କ ଗଲା ଧରିଅଛି, ଏହା ଦେଖି ସେ ଅଉ ସହି ପାରିଲା ନାହିଁ, ରାଗରେ ତାହାର ଶରୀର ଜ୍ୱଳିବାକୁ ଲାଗିଲା । ମତି କହିଲା, "ସ୍ତ୍ରୀ ଦେଖିବାମାତ୍ରେ ଯଦି ତୋର ଏତେ କଷ୍ଟ ହୁଏ, ତେବେ କାହିଁକି ତୁ ଏଠି ଗୁହ ମୁତରେ ପଡି ରହିପାରୁ ନାହୁଁ ? କଅଣ କରିବାକୁ ମୋ ଘରକୁ ଯାଉ ? ମିଣିପଟା ପାଞ୍ଚମିନିଟ୍ କହି ମୋତେ ପାଞ୍ଚଘଣ୍ଟା ବସାଇ ରଖିଛୁ !"

ମତି କଥା ଶୁଣି ହରେନ୍ଦ୍ର ଝଟ୍ ହୃଦୟଦାସୀର ହାତ ଛଡ଼ାଇ ଦେଇ ଠିଆ ହେଲେ, ଭୟରେ ତାଙ୍କର ମୁଖ ଶୁଖିଗଲା । ମତିର କଥା ଶେଷ ହେଲାରୁ ହରେନ୍ଦ୍ର କହିଲେ "ଚାଲ ଅମ୍ଭେମାନେ ଯାଉଁ ।"

ମତି । ନା, ଯିବୁ କାହିଁକି, ଏଠି ଥା ; ତୁ ଗଲେ ମେହେନ୍ତରର କାମ ଅଉ କିଏ କରିବ ?

ହୃଦୟଦାସୀ ପିତା ମାତାଙ୍କର ଛବି ଦୁଇଖଣ୍ଡ ଯାକ ଘର ସମ୍ମୁଖରେ ଟାଙ୍ଗି ରଖିଥିଲେ । ଅନେକ ଟଙ୍କା ଖରଚ କରି ଅତି ସୁନ୍ଦରରୂପେ ଛବି ଦୁଇଖଣ୍ଡ ବନାଇଥିଲେ । ମତିର ପାପଦୃଷ୍ଟି ହଠାତ୍ ସେହି ଛବି ଉପରେ

ପଡଗଲା । ପିଶାଚୀ ପଚାରିଲା, "ଏ ଦୁଇଟା ମାଇକିନିଆ ଓ ମରଦ କିଏ? ଏ କେଉଁମାନଙ୍କର ଛବି?"

ହରେନ୍ଦ୍ର ଉତ୍ତର କଲେ, "ମୋର ଶ୍ୱଶୁର ଓ ଶାଶୁଙ୍କର ।"

ମଢ । ଆହା, ମଲି ମୋତ, କିବା ଚେହେରା! ଏହି ଚେହେରା ଏମନ୍ତ ସୁନ୍ଦର କରି ବନାଇ ରଖିବାକୁ ଲଜ୍ଜା ବୋଧ ହେଲା ନାହିଁ? (ପିଶାଚୀ କିଛି-କ୍ଷଣ ଛବିକି ଅନାଇ ରହି କହିଲା) ଏମନ୍ତ ସୁନ୍ଦର ଫ୍ରେମରେ କେବେ ଏପ୍ରକାର କୁତ୍ସିତ ଛବି ରଖିବା ଉଚିତ ନୁହେ, ଏ ଫ୍ରେମରେ ଆମ୍ଭର ଚେହେରା ରହିବ । (ଛବି ଘେନି ଆସିବା ପାଇଁ ହରେନ୍ଦ୍ରଙ୍କୁ ଆଦେଶ ଦେଲା ।)

ଏତେବେଳ ଯାଏ ହରଦାସୀ ନୀରବ ଥିଲେ । ତାଙ୍କ ପ୍ରାଣରେ ଆଉ ସହି ହେଲା ନାହିଁ, ହରେନ୍ଦ୍ରଙ୍କୁ ଛବି କାଢିନେବା ପାଇଁ ଉଦ୍ୟତ ଦେଖି ହତଭାଗିନୀ ହରଦାସୀ ସ୍ୱାମୀଙ୍କ ପାଦ ଦୁଇ ହାତରେ ଛନ୍ଦି ଧରି କହିଲେ "ଆଉ ଦୁଇଟି ଦିନ କେବଳ ଅପେକ୍ଷା କର, ମୋର ଆଉ ବିଳମ୍ବ ନାହିଁ, ମୁଁ ଚାଲିଯାଏଁ, ତାର ପର ତୁମ୍ଭର ଯାହା ଇଚ୍ଛା ତାହା କରୁଥାଅ ।"

ମଢ ବେଶ୍ୟାର ହୁକୁମ ଅବହେଳା କରିବା ହରେନ୍ଦ୍ରଙ୍କର ସାଧ୍ୟ ନ ଥିଲା, ହରିଦାସୀଙ୍କ ଜୀବନର ଶେଷ ନିବେଦନ ସେ ଶୁଣିଲେ ନାହିଁ, ତାହାଙ୍କର ହାତ ଫୋପାଡି ଦେଇ ସେ ଛବି କାଢ଼ି ଆଣିଲେ, ଏବଂ ହତଭାଗିନୀର ସାକ୍ଷାତରେ ଛବି ଦୁଇଖଣ୍ଡଯାକ ଫ୍ରେମରୁ ବାହାର କରି ଦେଇ ଫ୍ରେମ ଦୁଇଖଣ୍ଡ ଘେନି ମଢ଼ ବେଶ୍ୟା ସଙ୍ଗରେ ଚାଲିଗଲେ ।

ସେ ରାତ୍ରିରେ ହରିଦାସୀ ଆଉ ଉଠିଲେ ନାହିଁ, ଛବି ଦୁଇଖଣ୍ଡି ଛାତିରେ ରଖି ମାଟିରେ ପଡି ରହିଲେ । ପିଲାମାନେ ପାଖରେ ବସି ସେହି ମାଟିରେ ଶୋଇ ପଡିଲେ ।

## ଉପସଂହାର

ତହୁଁ ଅରବିନ୍ଦ ଡାକ୍ତର ବାବୁ ଆସି ଦେଖିଲେ, ଯେ, ଏକ ସପ୍ତାହ ମଧ୍ୟରେ ହରିଦାସୀଙ୍କର ଅବସ୍ଥା ଭୟାନକ ଶୋଚନୀୟ ହୋଇଅଛି, ହରିଦାସୀ ନିଜେ ମଧ୍ୟ ସେ କଥା ବୁଝି ପାରୁଅଛନ୍ତି । ଡାକ୍ତର ବାବୁଙ୍କ ସଙ୍ଗରେ ସେଦିନ ତାଙ୍କର ଅନେକ କଥାବାର୍ତ୍ତା ହେଲା ; ହରିଦାସୀ କହିଲେ, "ଆପଣ ନ କହନ୍ତୁ ନା, ମୁଁ ବେଶ୍ ବୁଝିଛି ଯେ ମୋର ଆଉ ବିଳମ୍ବ ନାହିଁ ; ମୁଁ ମରିଁ ସେଥିରେ କିଛିମାତ୍ର ଦୁଃଖ ନାହିଁ; କିନ୍ତୁ ମୋର ବାଛାଧନମାନଙ୍କର ଦଶା କଅଣ ହେବ ଭାବି ମୋର ବଡ଼କଷ୍ଟ ହେଉ-ଅଛି । ଏ ପୃଥିବୀରେ ଆପଣଙ୍କ ଭିନ୍ନ ମୋର ଆଉ କେହି ନାହାନ୍ତି; ମୋର ପିଲାମାନଙ୍କର ଦଶା କଅଣ ହେବ ଆପଣ ମୋତେ କହନ୍ତୁ ।" ପିଲାମାନଙ୍କର କଥା ମନରେ ପଡ଼ିଲେ ହରିଦାସୀଙ୍କର ଚକ୍ଷୁରୁ ଜଳଧାର ବନ୍ଦ ହୁଏ ନାହିଁ ।

ହରିଦାସୀ ପିତାଙ୍କର ଉଇଲ୍ ବାହାର କରି ଦେଖାଇଲେ ଯେ, ତହିଁରେ ତାଙ୍କର ପିଲାମାନଙ୍କ ନାମରେ ପନ୍ଦର ହଜାର ଟଙ୍କାର କୋମ୍ପାନି କାଗଜ ଲେଖା ହୋଇଅଛି । ହରିଦାସୀ ତାଙ୍କର ପିଲାମାନଙ୍କର କୋମ୍ପାନି କାଗଜ ସୁଧରୁ ଏକ ପଇସା ମାତ୍ର ଖରଚ କରି ନାହାନ୍ତି, ସେସବୁ ଜମା ଅଛି, ପୁଣି ନିଜ ନାମର ଉଇଲ୍ କାଗଜରେ ଯେତେ ଟଙ୍କା ଲେଖାଥିଲା, ସେହି ଟଙ୍କା ମଧ୍ୟରୁ ଖରଚ ଯାଇ ବର୍ତ୍ତମାନ ପ୍ରାୟ ପାଞ୍ଚ ହଜାର ଟଙ୍କା ଜମା ରହିଅଛି ।

ଡାକ୍ତର ବାବୁ ପ୍ରତିଜ୍ଞା କଲେ ଯେ ସେ ତାଙ୍କର ପିଲାମାନଙ୍କୁ ନିଜ ଘରକୁ ନେଇ ଯାଇ ଲାଳନ ପାଳନ କରିବେ । ହରିଦାସୀଙ୍କ ମନରୁ ଗୋଟିଏ ମହାଚିନ୍ତା ଦୂର ହେଲା ; ତାହାଙ୍କର ପିଲାମାନେ ଅକୂଳ ସାଗରରେ ନ ଭାସି କୂଳରେ ଲାଗିବେ ଭାବି ତାହାଙ୍କର ମୁଖରେ ଉଲ୍ଲାସର ଭାବ ଦେଖା ଗଲା ।

ହରିଦାସୀଙ୍କର ଇଚ୍ଛା ଥିଲା ଯେ, ସେ ନିଜ ନାମର କୋମ୍ପାନି କାଗଜରୁ ଡାକ୍ତର ବାବୁଙ୍କୁ କିଛି ଦିଅନ୍ତେ, କିନ୍ତୁ ସେ ସେଥିରେ ସ୍ୱୀକୃତ ହେଲେ ନାହିଁ, ବରଞ୍ଚ ହରିଦାସୀଙ୍କ କଥାରେ ବିରକ୍ତ ହେଲେ । ହରିଦାସୀ ତାହାଙ୍କ ନାମର ସମସ୍ତ କୋମ୍ପାନି କାଗଜ ସ୍ୱାମୀ ନାମରେ ଲେଖି ଦେଲେ ।

ହରିଦାସୀଙ୍କ ପ୍ରତି ହରେନ୍ଦ୍ରଙ୍କର ଅତ୍ୟାଚାର ଓ କୁବ୍ୟବହାରର କଥା ସବୁ ଡାକ୍ତର ବାବୁ ଶୁଣିଥିଲେ । ତାଙ୍କର ଇଚ୍ଛା ଥିଲା ଯେ, ଯେମନ୍ତ ସେହି ନର-ପିଶାଚକୁ କିଛିମାତ୍ର ଦିଆ ନ ହୁଏ ! ହରିଦାସୀ ତାହା ବୁଝିଲେ, ବୁଝିକରି କହିଲେ ମୋହର ସ୍ୱାମୀଙ୍କର ଚରିତ୍ର ଦିନେ ନିଷ୍ପାପ ଓ ନିଷ୍କଳଙ୍କ ଥିଲା, ଏବେ ଯଦିଚ ତାଙ୍କର ଅଧଃପତନ ହୋଇଅଛି, ତଥାପି ତାହା ଛାଡିଲେ ତାଙ୍କର ଚରିତ୍ର ପୁନର୍ବାର ଭଲ ହେବ । ହରେନ୍ଦ୍ର ଦୁଶ୍ଚରିତ୍ର ହୋଇଛନ୍ତି ବୋଲି ତାହାଙ୍କୁ ଘୃଣା ନ କରି ତାହାଙ୍କର ଚରିତ୍ର ସଂଶୋଧନ କରିବା ନିମନ୍ତେ ହରିଦାସୀ ଡାକ୍ତର ବାବୁଙ୍କୁ ଅନୁରୋଧ କଲେ, ଏବଂ ଯେତେ ଦିନ ତାହାଙ୍କର ଚରିତ୍ରସଂଶୋଧନ ନ ହୁଏ ସେତେ ଦିନ ସମସ୍ତ କାଗଜପତ୍ର ତାହାଙ୍କ ହାତରେ ଦେବାକୁ ନିଷେଧ କରି ସେହି ସବୁ କାଗଜପତ୍ର ଡାକ୍ତର ବାବୁଙ୍କ ହସ୍ତରେ ସମର୍ପଣ କଲେ ।

ହରେନ୍ଦ୍ର ହରିଦାସୀଙ୍କି ପରିତ୍ୟାଗ କରି ରହିଲେ ମଧ୍ୟ ଡାକ୍ତର ବାବୁ ଦେଖିଲେ ଯେ, ଏହି ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ହରେନ୍ଦ୍ର ସେହି ହରିଦାସୀଙ୍କର କ୍ଷୁଦ୍ର ହୃଦୟଟି ସମ୍ପୂର୍ଣ୍ଣରୂପେ ଅଧିକାର କରିଅଛନ୍ତି । ଡାକ୍ତର ବାବୁ ମନେ ମନେ ହରିଦାସୀଙ୍କି ଧନ୍ୟବାଦ ଦେଲେ ଏବଂ ତାହାଙ୍କର ସ୍ୱାମୀର ଚରିତ୍ର ସଂଶୋଧନ କରିବା ନିମନ୍ତେ ପ୍ରତିଶ୍ରୁତ ହୋଇ କିଛିକ୍ଷଣ ପାଇଁ ବିଦାୟ ହୋଇ ଗଲେ ।

ହରିଦାସୀଙ୍କ ମନର ଚିନ୍ତାରି ଅନେକ ଅଂଶରେ ଲାଘବ ହେଲା, ଯେମନ୍ତ ତାହାଙ୍କ ଶରୀର ପୂର୍ବଠାରୁ ଅନେକ ଅଂଶରେ ସୁସ୍ଥ ବୋଲି

ବୋଧ ହେବାକୁ ଲାଗିଲା । ସେହି ସମୟରେ ହରିଦାସୀ ହରେନ୍ଦ୍ରଙ୍କୁ ଆଉ ଖଣ୍ଡିଏ ପତ୍ର ଲେଖିଲେ—

ଜୀବିତେଶ୍ୱର,

ଏ ଜୀବନରେ ତୁମ୍ଭ ସହିତ ହୋଇପାରେ ମୋର ଆଉ ଦେଖା ହେବ ନାହିଁ ; ମୁଁ ଚାଲି ଯାଉଅଛି ; କିନ୍ତୁ ମୋର ପିଲା ତିନୋଟି ରହିଲେ । ତୁମ୍ଭ ଭିନ୍ନ ଆଉ ସେମାନଙ୍କର କେହି ନାହାନ୍ତି ; ମୁଁ ଚାଲି ଗଲେ କାଲି ଯେତେବେଳେ ସେମାନେ "ମାଆ ମାଆ" ବୋଲି ଡାକିବେ, ମୋତେ ଦେଖି ନ ପାରି ଯେତେବେଳେ ସେମାନେ ଧୂଳିରେ ଗଡ଼ି ୨ କାନ୍ଦିବେ, ସେତେବେଳେ ଥରେମାତ୍ର ଆସି ସେମାନଙ୍କୁ କୋଳରେ ଧରିବ, ତୁମ୍ଭଙ୍କୁ ଦେଖିଲେ ସେମାନଙ୍କର ଅନେକ ଅଂଶରେ ମାତୃଶୋକ ଓ ଦୁଃଖ ଦୂର ହୋଇ ଯିବ ।

ହତଭାଗିନୀ,

ହରିଦାସୀ ।

ଭାଷା ଖଣ୍ଡିକ ସ୍ୱାମୀଙ୍କ ନିକଟକୁ ପଠାଇ ଦେଇ ହରିଦାସୀ ପିଲାମାନଙ୍କୁ ଯେନ ଆଜ ଅନେକ ଦିନ ଉତ୍ତାରେ ଅନେକ କ୍ଷଣ ପର୍ଯ୍ୟନ୍ତ ସେମାନଙ୍କ ସାଙ୍ଗରେ ଖେଳିଲେ, ସେ ସେମାନଙ୍କୁ କେତେ କାହାଣୀ କହିଲେ । ମାଆ ସାଙ୍ଗରେ ଖେଳିବାରୁ ଓ ମାଆଙ୍କ ମୁଖରୁ କାହାଣୀ ଶୁଣିବାରୁ ଆଜ ପିଲାମାନଙ୍କର ମନ କେଡ଼େ ଅହ୍ଲାଦିତ ହେଲା । ବାମାଚରଣ କହିଲା "ମାଆ ତୁ ଆଉ କାନ୍ଦ ନାହିଁ ; ତୁ କାହିଁକି ଦିନକୁଦିନ କାହାଣୀ କହୁ ନାହୁଁ ?" ହରିଦାସୀ ପଚାରିଲେ, "ମୁଁ କାନ୍ଦିଲେ କି ତୁମ୍ଭମାନଙ୍କର ମନ ଦୁଃଖ ହୁଏ ?"

ବାମାଚରଣ । ହୁଏ, ଖୁବ୍ ହୁଏ ; ମୋର ହୁଏ, ଶ୍ୟାମର ହୁଏ, ନଣ୍ଡାର ବି ହୁଏ ; ତୁ କାନ୍ଦିଲେ ସେମାନେ କାନ୍ଦନ୍ତି, ମୁଁ ବି କାନ୍ଦେ ।

ହରଦାସୀ । ମୁଁ ଆଉ କାନ୍ଦିବ ନାହିଁ, ତୁମ୍ଭେମାନେ ଆଉ କାନ୍ଦିବ ନାହିଁ ତ ?

ବାମାଚରଣ । ନା, ଆଉ କାନ୍ଦିବୁଁ ନାହିଁ ।

ହରଦାସୀ । ଶ୍ୟାମ କି ନଣ୍ଡ୍ରା କାନ୍ଦିଲେ ସେମାନଙ୍କୁ ତୁନି କରାଇ ପାରିବୁ ତ ?

ବାମାଚରଣ । ହଁ, ମୁଁ ତା ପାରିବ ।

ହରଦାସୀ । କାଲି ଡାକ୍ତର ବାବୁ ତୁମ୍ଭ ତିନି ଭାଇଙ୍କି ତାଙ୍କ ନିଜ ବସାକୁ ଘେନି ଯିବେ ।

ବାମାଚରଣ । ତୁ ଯିବୁ ନାହିଁ କି ?

ହରଦାସୀ । ନା ।

ବାମାଚରଣ । ଅମ୍ଭେମାନେ ବି ଯିବୁଁ ନାହିଁ ।

ହରଦାସୀ । ନା, ଯିବ ନାହିଁ ଆଉ କଅଣ; କିନ୍ତୁ ସେଠାରେ ମାରାମାରି କରିବୁ ନାହିଁ; ଆଉ ଶ୍ୟାମକୁ, ନଣ୍ଡ୍ରାକୁ ପାଖରେ ରଖିବୁ ।

ବାମାଚରଣ । ଆଉ କେବେ ଲେଉଟି ଆସିବୁଁ? ତୋର ବେରାମି ହେଲେ ଯେ ତୋତେ ଔଷଧି ଦେବୁଁ ।

ହରଦାସୀ । କାଲି ଅଉ ମୋ ବେରାମି ରହିବ ନାହିଁ, ମୁଁ କାଲି ତୋ ଅଜା ସାଙ୍ଗରେ ଦେଖା କରିବାକୁ ଯିବ ।

ବାମାଚରଣ । ଅମ୍ଭେମାନେ କେଉଁଠି ରହିବୁଁ ?

ହରଦାସୀ । ଭାଇ ତୁହିଙ୍କି ଘେନି ଡାକ୍ତର ବାବୁଙ୍କ ବସାରେ ରହିବ, ସେ ତୁମ୍ଭମାନଙ୍କୁ ସ୍ନେହ କରିବେ ଓ ଭଲ ପାଇବେ ।

ବାମାଚରଣ । ନା, ମାଆ, ତୁ ତା ଗୋଡ଼ଧରିଲେ ପଡ଼ୁଛୁ, ଆମ୍ଭମାନଙ୍କୁ ଫୋପାଡ଼ ଦେଇ ଯା ନାହିଁ, ତୋତେ ଛାଡ଼ି ଦଣ୍ଡେ ରହି ପାରିବୁଁ ନାହିଁ ।

ବାମାଚରଣ କାନ୍ଦି ଉଠିଲା, ତାହାର ଦେଖାଦେଖି ଭାଇ ଦୁହେଁ ବି

କାନ୍ଦିବାକୁ ଲାଗିଲେ, ହରିଦାସୀଙ୍କର ଅକ୍ଷିରୁ ଲୁହ ଗଡ଼ିଲା, କିଛିକ୍ଷଣ ପରେ ତାହାଙ୍କୁ ଜ୍ୱର ହେଲା ।

ହରିଦାସୀ ସ୍ୱାମୀଙ୍କର ଗଳା ଧରି କାନ୍ଦି କାନ୍ଦି କହୁଥିଲେ "ଆଉ ମୁଁ ବଞ୍ଚିବି ନାହିଁ, ଯେ କେତେଦିନ ମୁଁ ଅଛି, ଆଉ ମୋତେ ଫୋପାଡ଼ି ଦେଇ ଯାଅ ନାହିଁ ।" ହରେନ୍ଦ୍ର ସେ କଥାର କୌଣସି ଉତ୍ତର ନ ଦେଇ ହରିଦାସୀଙ୍କର ପ୍ରାଣଠାରୁ ପ୍ରିୟ ତାଙ୍କ ପିତା ମାତାଙ୍କର ଛବି ଦୁଇଖଣ୍ଡିଯାକର ବଡ଼ ଅବମାନନା କରି ଚାଲି ଯାଉଥିଲେ; କିନ୍ତୁ ସେହି ଦିନଠାରୁ ତାଙ୍କର ମନରେ ଯେମନ୍ତ କୌଣସି ଅସୁଖ ଓ ଅଶାନ୍ତି ଉଦୟ ହୋଇଅଛି । ହରିଦାସୀଙ୍କର ସେହି ସବୁ କଥା ଯେମନ୍ତ ରହି ରହି ତାହାଙ୍କର ବିବେକକୁ ଆଘାତ କରୁଅଛି । ଚିତ୍ତ ପ୍ରସନ୍ନ କରିବା ନିମନ୍ତେ ହରେନ୍ଦ୍ର ଉଦର ପୂର୍ତ୍ତି କରି ମଦପାନ କରୁଅଛନ୍ତି । ପରଦିନ ସକାଳେ ନିଦ୍ରା ଭାଙ୍ଗିବାମାତ୍ରେ କିଏ ଯେମନ୍ତ ତାଙ୍କର କାନେ କାନେ ପୂର୍ବ ଦିନର ସେହିସବୁ କଥା ଫୁସ୍ ଫୁସ୍ କରି କହି ଚାଲିଗଲା । ପୁନର୍ବାର ତାଙ୍କର ମନ ପ୍ରାଣ ସେହିପରି ଅସ୍ଥିର ହୋଇ ଉଠିଲା ।

ଅନେକଦିନ ଉତ୍ତାରେ ଆଜ ହରେନ୍ଦ୍ରଙ୍କର ପୂର୍ବ ଅବସ୍ଥା ସ୍ମରଣ ହେଲା । ବହୁକାଳ ବିସ୍ମୃତ ସୁଖ ସ୍ୱପ୍ନପରି ହରିଦାସୀଙ୍କ ସମ୍ବନ୍ଧରେ କେତେକ କଥା ତାଙ୍କର ମନରେ ଜାଗି ଉଠିବାରୁ ତାହାଙ୍କୁ ସନ୍ତପ୍ତ କରି ଦେଲା । ଏମନ୍ତ ସମୟରେ ହରିଦାସୀଙ୍କ ଚିଠା ତାହାଙ୍କର ହସ୍ତଗତ ହେଲା ।

ପତ୍ର ପଢ଼ି ହରେନ୍ଦ୍ର କାହାକୁ କିଛି ନ କହି ଖାଲି ପାଦ ଓ ଖାଲି ଦେହରେ ପାଗଳପରି ହୋଇ ଦାଣ୍ଡେ ଦାଣ୍ଡେ ଊର୍ଦ୍ଧ୍ୱଶ୍ୱାସରେ ଦୌଡ଼ିଲେ; ଏବଂ ଯେତେବେଳେ ହରିଦାସୀଙ୍କର ଅଣଶ୍ୱାଣ ପବନ ବା ନାଭିଶ୍ୱାସ ବହିବାକୁ ଆରମ୍ଭ ହୋଇଅଛି ସେହି ସମୟରେ ସେ ଆସି ତାହାର ପାଦତଳେ ଗଡ଼ିବାକୁ ଲାଗିଲେ ।

ହରଦାସୀ ଅସନ୍ନକାଳ ଉପସ୍ଥିତ ହୋଇଅଛି ବୁଝିପାରି ଚକ୍ଷୁ ମୁଦି ମନେ ମନେ ଭଗବାନଙ୍କର ନାମ ଜପ କରୁଥିଲେ, ମନେ ମନେ ଭଗବାନଙ୍କୁ ଡାକି କହୁଥିଲେ, "ହେ ହରେ ! ହେ ବିପଦଭଞ୍ଜନ ! ହେ କଙ୍ଗାଳର ଠାକୁର ! ମୋର ପିଲା ଛଅଜଣଟି ରହିଲେ, ସେମାନଙ୍କୁ ଦେଖିବେ, ମୋର ସ୍ୱାମୀ ରହିଲେ, ତାହାଙ୍କୁ ସୁମତି ଦିଅନ୍ତୁ ।"

ଏମନ୍ତ ସମୟରେ ବାମାଚରଣ ଡାକି କହିଲା, "ମା, ବାପା ଆସିଛନ୍ତି ।"

ହରଦାସୀ କାତରସ୍ୱରରେ କହିଲେ, "କାହାନ୍ତି ? ତାଙ୍କୁ ଡାକ, ଥରେ ମୋ ପାଖରେ ବସିବାକୁ କହ ।"

ହରେନ୍ଦ୍ର ହରଦାସୀଙ୍କ ନିକଟରେ ବସି ତାଙ୍କର ହାତ ଦୁଇଟି ଧରି କହିଲେ, "ହରଦାସୀ, ମୁଁ ଆସିଅଛି, ଆଉ ମୁଁ ତୁମ୍ଭଙ୍କୁ ଛାଡ଼ିଦେଇ ଯିବ ନାହିଁ, ତୁମ୍ଭେ ମୋତେ ଛାଡ଼ି ଯାଅ ନାହିଁ ।" ହରଦାସୀ ଅନାଇ ଦେଖିଲେ, ସ୍ୱାମୀଙ୍କ ଆଖିରୁ ଲୁହ ଗଡ଼ୁଅଛି । ସ୍ୱାମୀଙ୍କର କ୍ରନ୍ଦନ ତାହାଙ୍କର ଅସହ୍ୟ ହେଲା, ହରଦାସୀ ସେ ଲୁହ ପୋଛି ଦେବାପାଇଁ ହାତ ଉଠାଇବାକୁ ଚେଷ୍ଟା କଲେ ; କିନ୍ତୁ ଆଉ ହାତ ଉଠିଲା ନାହିଁ । ହରଦାସୀ କହିଲେ, "ଦୁଇଦିନ ଆଗରୁ ଆସିଲ ନାହିଁ କାହିଁକି, ଦୁଇ ଦିନ ଆଗରୁ ଏହି କଥା କହିଲ ନାହିଁ କାହିଁକି ; ତାହା ହେଲେ ମୁଁ କେବେ ମରି ନ ଥାନ୍ତି, ବଞ୍ଚିଥାନ୍ତି, କିନ୍ତୁ ଆଉ ଆଶା ନାହିଁ, ମୁଁ ଯାଉଛି, ତୁମ୍ଭର ପିଲାମାନେ ରହିଲେ ।" କଥା କହୁଁ କହୁଁ ହରଦାସୀଙ୍କର ଚକ୍ଷୁ ମୁଦ୍ରିତ ହୋଇ ଆସିଲା ।

ହରେନ୍ଦ୍ରଙ୍କ ଚକ୍ଷୁରୁ ଝରି ଝରି ହୋଇ ଜଳ ଗଡ଼ିବାକୁ ଲାଗିଲା; ହରେନ୍ଦ୍ର କାନ୍ଦି କାନ୍ଦି କହିଲେ, "ହରଦାସୀ, ଆଉ ଥରେ ମୋ ଆଡ଼କୁ ଚାହିଁ, ମୋର ଏ ପାପର ପ୍ରାୟଶ୍ଚିତ୍ତ କଅଣ କହିଯାଅ ।

ହରଦାସୀ ଚାହିଁଲେ ଓ ସ୍ୱାମୀଙ୍କର ହାତ ଦଓଟି ଧରି କହିଲେ, "ମୋ ଜୀବନର ଶେଷ ଅନୁରୋଧ ଏହି ଯେ ଆଉ ମଦ ପିଇବ ନାହିଁ,

ମୁଁ ତୁମ୍ଭଙ୍କୁ ସୁଖୀ କରି ପାରିଲି ନାହିଁ, ଯଦି ଇଚ୍ଛା ଥାଏ ତେବେ ଅଉ ଥରେ ବିବାହ କର, କିନ୍ତୁ ଅଉ କାହାକୁ ଏପ୍ରକାର କଷ୍ଟ ଦେବ ନାହିଁ ।”

ହରେନ୍ଦ୍ର ଥରକୁଥର ତାହାଙ୍କୁ କ୍ଷମା ମାଗିଲେ ।

ହରିଦାସୀ ବାମାଚରଣ ଓ ଶ୍ୟାମାଚରଣଙ୍କୁ ବାମ ପାଖରେ ବସାଇଲେ, ସାନ ପିଲାଟିଙ୍କ କୋଳରେ ଧରିଲେ, ଥରକୁଥର ସେମାନଙ୍କର ମୁଖ ଚୁମ୍ବନ କରି ଭଗବାନଙ୍କର ନାମ ସ୍ମରଣ କରିତଃ ହାତ ଉଠାଇ ସେମାନଙ୍କୁ ଆଶୀର୍ବାଦ କଲେ; ତାର ପରେ ହରେନ୍ଦ୍ରଙ୍କ ହାତରେ ପିଲାମାନଙ୍କୁ ସମର୍ପଣ କରି କହିଲେ, “ମୋ କାର୍ଯ୍ୟ ଶେଷ ହେଲାଣି, ଏବେ ମୁଁ ବିଦାୟ ହୁଏ, ମୋତେ ବିଦାୟ ଦିଅ ।”

ଏହି କଥା କହି ସେ ଏହି ଜନ୍ମ ସକାଶେ ଚିରକାଳ ପାଇଁ ଚକ୍ଷୁ ମୁଦିଲେ । ଦୀପ ନିଭି ନିଭି ଗଲା, ସଂସାରର ଲୀଳା ଶେଷ ହେଲା ।

ପିଲାମାନେ “ହେ ମାଆ,” କଥା କହ, ହେ ମାଆ, ଟିକିଏ ଚାହଁ,” ଏହିପରି କହି କେତେ ଡାକିଲେ, ଓ କେତେ କାନ୍ଦିଲେ, କିନ୍ତୁ ହରିଦାସୀ ସେମାନଙ୍କ ସାଙ୍ଗରେ ଅଉ ଥରେମାତ୍ର କଥା କହିଲେ ନାହିଁ ।

ଡାକ୍ତର ବାବୁଙ୍କ ନିକଟକୁ ଖବର ଗଲା; ତାହାଙ୍କର ଉଦ୍ଯୋଗରେ ହରିଦାସୀଙ୍କର ଜୀବଶୂନ୍ୟ ଦେହ ସଂସ୍କାର ନିମନ୍ତେ ଗଙ୍ଗାକୂଳକୁ ନୀତ ହେଲା । କ୍ଷଣକାଳ ମଧ୍ୟରେ ତାହାଙ୍କର ପଞ୍ଚଭୂତାତ୍ମକ ଦେହ ପଞ୍ଚ ଭୂତରେ ମିଶିଗଲା ।

ସମାପ୍ତ ।



## ସ୍ୱାମୀର ଶୋକ

୧

ହୃଦୟବାସିନୀ ସଖି ସ୍ୱର୍ଗରୁ ହାସିନୀ
ପବିତ୍ରା ଧାର୍ମିକା ପ୍ରେମମୟୀ କାଦମ୍ବିନୀ ;
କାହିଁ ସବୁ ସ୍ନେହ ମାୟା, ଲୁଚିଗଲ କାହିଁ ଛାୟା ?
ଅଧମକୁ ଦୁଃଖମୟ ଜୀବନ ଯାମିନୀ
ଯାପିବାକୁ ଛାଡି ସ୍ୱର୍ଗେ ଗଲ ପ୍ରଣୟିନି !

୨

ସମ୍ବନ୍ଧେ ଭାର୍ଯ୍ୟା ପୁଣି ଏକତାରେ ଭ୍ରାତା,
ପରାମର୍ଶେ ମନ୍ତ୍ରୀ, କାର୍ଯ୍ୟେ ବନ୍ଧୁ, ସ୍ନେହେ ମାତା,
ଥିଲ ଯତ୍ନରେ ଭଗିନୀ, ତୋଷିବାରେ କୁଟୁମ୍ବିନୀ,
ଶୁଶ୍ରୂଷାରେ ଦାସୀ, ଆଉ ଭକ୍ତିରେ ଦୁହିତା ;
ଏକାବେଳେ ସୁଲକ୍ଷଣେ ଥିଲ ଗୋ ପୂରିତା ।

୩

ପାର୍ଶ୍ୱ କୃଷ୍ଣ କେଶ ତବ ଚାରୁପଦ୍ମାନନ,
ପ୍ରେମୋଜ୍ଜ୍ୱଳ ନେତ୍ର, ବାକ୍ୟ ହୃଦୟ-ରଞ୍ଜନ,
ନିରୁପମ ରୂପରାଶି, ଦୁଃଖ-ସର୍ବରୀ ନାଶି
ସଦା କରୁଥିଲା ମମ ଚିତ୍ତ ବିନୋଦନ,
ସେସବୁ ବିରହାନଳେ ଦହେ ଏବେ ମନ ।

୪

ଭୁଲିବାକୁ ଇଚ୍ଛେ ପ୍ରିୟେ ତବ ଗୁଣଗ୍ରାମ
ଝରିଲେ ବନ୍ଦ୍ୱୋଖି ମନ ଜପମାଳା ସମ
ଜପେ, ତେଣୁ ଅନୁକ୍ଷଣ, ତବ ଛବି ହୃଦେ ଧରି
ତେଜିଲି ସଂସାର ସୁଖ ତୁମ୍ଭରି କାରଣ
ଶୋକ-ଅଶ୍ରୁ-ନେତ୍ରେ ସଦା କରିବି ଭ୍ରମଣ ।

---

ଗୀତ ।

ଉଙ୍ଗା ପାଣି ପାନେ, ଦଙ୍ଗା ରଙ୍ଗା ହୋଇଛି ।
ଶମନ ଆସି ବିକଟ ବେଶେ କେଶ ଧରିଛି । ଘୋଷା ।
ନାହିଁ ମାନ, ନାହିଁ ଧନ, ନାହିଁ କେହି ପରିଜନ,
ନାହିଁତ ବାସ ଭବନ ସବୁ ଯାଇଛି । ୧ ।
କେତେ ଥର ମନ କରି, ଏ ବିଷ ତିଆଗ କରି,
ଛାଡିବାକୁ ନାହିଁ ପାରି, କି ଗୁଣ ଅଛି । ୨ ।
ଯେବେ ଲାଗଇ ପିପାସା, ଏ ପାଣିରେ ମେଣ୍ଟାଇ ଆଶା,
ବୋତଲରେ ସବୁ ଆଶା ନହିତ ଅଛି । ୩ ।
ପାନ କରି ହୁଲାହୁଲି ହେଲି ମୁଁ ବଡ ପାଗଳ,
ଜୀବନର ସବୁ ଗଲା, ନାହିଁ ଯେ କିଛି । ୪ ।
ସେ ଶମନ ନ ଛାଡିବ, ମୋତେ ଯେବେ ନେଇ ଯିବ,
ଯାଉଛି ଏବେ ମୁଁ ତେବେ, ଡାକ ପଡଛି । ୫ ।

---

